# ଚୟନିକା

## ୩

—ମୁଖ୍ୟ ସମ୍ପାଦକ—

**ସୁରେନ୍ଦ୍ର ମହାନ୍ତି**

ସମ୍ପାଦକ

**ଡକ୍ଟର ଭବଗ୍ରାହୀ ମିଶ୍ର**

**ସମ୍ପାଦନା ମଣ୍ଡଳୀ**

ଡକ୍ଟର ନୀଳାଦ୍ରିଭୂଷଣ ହରିଚନ୍ଦନ, ଶାନ୍ତିନିକେତନ
ଡକ୍ଟର ଗଗନେନ୍ଦ୍ର ନାଥ ଦାଶ, ବ୍ରହ୍ମପୁର
ଡକ୍ଟର ପୂର୍ଣ୍ଣାନନ୍ଦ ଦାନୀ, ସମ୍ବଲପୁର
ଶ୍ରୀମତୀ ମନୋରମା ମହାପାତ୍ର ( ବିଶ୍ୱାଳ ), ଭୁବନେଶ୍ୱର

ସହକାରୀ ସମ୍ପାଦକ : **ନିକୁଞ୍ଜ ଜେନା**

ପରିଚାଳନା ସମ୍ପାଦିକା : **ବ୍ରତତୀ ବଳ**

ପ୍ରଚ୍ଛଦ ଚିତ୍ର : **ପ୍ରଫୁଲ୍ଲ ମହାନ୍ତି, ଲଣ୍ଡନ**

ସମ୍ପାଦନା କାର୍ଯ୍ୟାଳୟ :
ଡଃ ଭବଗ୍ରାହୀ ମିଶ୍ର
ବି-୪ ଶାବତେଳନଗର
ଭୁବନେଶ୍ୱର-୭୫୧୦୦୯
ଟେଲିଫୋନ-୫୨୬୭୨

ପ୍ରକାଶକ :
ପ୍ରଦ୍ୟୁମ୍ନ ବଳ
ପ୍ରଗତିବାଦୀ ପବ୍ଲିକେଶନସ୍
ବାପୁଜୀନଗର
ଭୁବନେଶ୍ୱର-୭୫୧୦୦୯
ଟେଲିଫୋନ-୫୧୫୬୯/୨୧୪୬୩

ମୁଦ୍ରଣ :
ସୁମୁଦ୍ରଣୀ
ଝାଞ୍ଜିରି ମଙ୍ଗଳା
କଟକ-୭୫୩୦୦୯
ମୂଲ୍ୟ—ଚାରିଟଙ୍କା

CHAYANIKA Vol-I. No.-3
Publisher :
**Pradyumna Bal**
Pragativadi Publications
Bapuji Nagar
Bhubaneswar-751009
Price : **Rupees four only**

---

This magazine is printed on paper supplied by Govt. of India at a concessional rate.

# ଲେଖା ଓ ଲେଖକ

**ପ୍ରକାଶକର କଥା...........**

# ସାହିତ୍ୟ ଓ ଦରବାର

**'ଚୟନିକା'ର ତୃତୀୟ ସଂଖ୍ୟା ଆପଣମାନଙ୍କ ପାଖକୁ ଯାଉଛି ।**

ଏହା ମଧ୍ୟରେ ଓଡ଼ିଶା ସାହିତ୍ୟ ଏକାଡେମୀର ରଜତ ଜୟନ୍ତୀ ଉତ୍ସବ ମହାସମାରୋହ ଏବଂ ଉଲ୍ଲାସରେ ପାଳିତ ହୋଇଛି । ସରକାରୀ ସଂସ୍ଥାର ବଳ 'ଅର୍ଥ' (ଖର୍ଚ୍ଚ) ଓ ଦୁର୍ବଳତା 'କାର୍ଯ୍ୟ' ( ଅପାରଗତା ) ଗୁଣ ଓ ଦୋଷରେ, ଏହି ସମାରୋହ ମିଶ୍ରିତ ପ୍ରତିକ୍ରିୟା ସୃଷ୍ଟି କରିଛି ।

ଓଡ଼ିଶାର ଉପାନ୍ତ ଅଂଚଳ ସୁନାବେଡ଼ା ଓ ରାଉରକେଲାଠାରେ ମଧ୍ୟ ପ୍ରଚୁର ଓ ଜାକଜମକର ଆସର ମଧ୍ୟରେ ସାହିତ୍ୟୋତ୍ସବ ଏବଂ ସାହିତ୍ୟ ସମାରୋହମାନ ଅନୁଷ୍ଠିତ ହୋଇଛି ।

ଆଗେ ରାଜ ଦରବାରରେ ପଣ୍ଡିତ ଏବଂ ସାହିତ୍ୟିକମାନଙ୍କର ଆଦର ଓ ସମ୍ମାନ ଥିଲା । ଏବେ ପଣ୍ଡିତ ଓ ସାହିତ୍ୟିକମାନେ ମନ୍ତ୍ରୀମାନଙ୍କୁ ଆଦରିଲେଣି ଓ ସମ୍ମାନ ପ୍ରଦର୍ଶନ କରିବାକୁ ପ୍ରତିଯୋଗୀତା କରିଲେଣି । ଚୟନିକା'ର ମୁଖ୍ୟ ସଂପାଦକ ତଥା ଓଡ଼ିଶା ସାହିତ୍ୟ ଏକାଡେମୀର ସଭାପତିଙ୍କ ମତରେ ସ୍ୱାଧୀନତା ପୂର୍ବରୁ ଓଡ଼ିଶା ସାହିତ୍ୟ ସମୃଦ୍ଧ ଏବଂ ବହୁମୁଖୀ ଥିଲା । ସ୍ୱାଧୀନୋତ୍ତର କାଳରେ ଗଦ୍ୟକାର ଓ କବିମାନଙ୍କର ନୂତନ ବଂଶଧରମାନେ ଓଡ଼ିଆ ସାହିତ୍ୟରେ ପ୍ରସାରିତ ଦିଗ୍‌ବିଜୟ ଲାଭ କରିଛନ୍ତି ଏବଂ ବର୍ତ୍ତମାନ ପାଇଁ ଅବକ୍ଷୟମୁଖୀ ହେଲେ ମଧ୍ୟ ସବୁ ସାହିତ୍ୟ ପରି ଓଡ଼ିଆ ସାହିତ୍ୟର ଭବିଷ୍ୟତ ଉଜ୍ଜଳ ।

ଶ୍ରୀ ସୁରେନ୍ଦ୍ର ମହାନ୍ତି ଆହୁରି ମଧ୍ୟ ମତ ପ୍ରକାଶ କରିଛନ୍ତି, ଓଡ଼ିଆ ସାହିତ୍ୟ ଯେଉଁ ସବୁ ପ୍ରତିବନ୍ଧକର ସମ୍ମୁଖୀନ ହେଉଛି ସେଥିରେ ସାହିତ୍ୟର କୌଣସି ନିୟନ୍ତ୍ରଣ ନାହିଁ । ସାମାଜିକ, ଅର୍ଥନୈତିକ ଏବଂ ବୈଷୟିକ ପରିସ୍ଥିତି ସାହିତ୍ୟର ପୂର୍ଣ୍ଣ ବିକାଶର ପ୍ରତିରୋଧକ ହୋଇଛି । ଯାହା ଅଭାବ ତାହା କେବଳ ସରକାର ( ଅନ୍ୟ ଅର୍ଥରେ ସରକାରୀ କିମ୍ବା ରାଷ୍ଟ୍ରୀୟ କ୍ଷମତା )

ହିଁ ପୂରଣ କରିପାରିବେ । ତାଙ୍କ ମତରେ ସାହିତ୍ୟ ଆଜି ଜନଜୀବନରେ ଓ ସରକାରଙ୍କ ଯୋଜନାରେ ନିମ୍ନତମ ଅଗ୍ରାଧିକାର ଲାଭ କରିଛି । ତଥାପି ଓଡ଼ିଆ ଯୁବ-ସାହିତ୍ୟିକମାନେ ଭାରତୀୟ ସାହିତ୍ୟ ଜଗତକୁ ମୂଲ୍ୟବାନ ଅବଦାନ ଦେବାର ବିପୁଳ ସମ୍ଭାବନା ରହିଛି ।

ମୁଁ ଏଥି ସହିତ ଏକମତ ।

ମୋ ମତରେ ଆବଶ୍ୟକତାଠାରୁ ଅଧିକ ସରକାରୀ ସାନିଧ୍ୟ ବଦଳରେ ସରକାରଙ୍କଠାରୁ ସମ୍ମାନ ଜନକ ଦୂରତ୍ୱ ପ୍ରତିଷ୍ଠା କଲେ ମୂଲ୍ୟବାନ ସାହିତ୍ୟ ସୃଷ୍ଟି ହେବାର ସମ୍ଭାବନା ବେଶୀ । କିନ୍ତୁ ନମ୍ରତାର ସହ କହିରଖେ, ଏହା ମୋର ଏକାନ୍ତ ବ୍ୟକ୍ତିଗତ ମତ । କାହାପ୍ରତି ଆକ୍ଷେପୋକ୍ତି ନୁହେଁ ।

ପ୍ରଦ୍ୟୁମ୍ନ ବଳ



ସଂପାଦକୀୟ :—

# ଏ ଅବକ୍ଷୟ କାହିଁକି ?

ସାହିତ୍ୟ ସହିତ ରାଜନୀତିର ପ୍ରତ୍ୟକ୍ଷ ସଂପର୍କ ଆପାତ ଦୃଷ୍ଟିରେ ହୁଏତ ନାହିଁ; ମାତ୍ର ରାଜନୈତିକ ଘୂର୍ଣ୍ଣି ଓ ସମାଜ ବିପ୍ଳବ ମଧ୍ୟରୁ ହିଁ କାଳୋତ୍ତୀର୍ଣ୍ଣ ସାହିତ୍ୟର ସୃଷ୍ଟି ଯୁଗେ ଯୁଗେ ସମ୍ଭବ ହୋଇ ପାରିଅଛି । ବସ୍ତୁତଃ ଇଂରାଜୀ ରୋମାଣ୍ଟିକ୍ କବିତା ଫରାସୀ ବିପ୍ଳବର ସନ୍ତାନ—ଏକଥା ଇଂରାଜୀ ସାହିତ୍ୟର ସମାଲୋଚକମାନେ ଅସ୍ୱୀକାର କରନ୍ତି ନାହିଁ ଓ୍ୱାର୍ଡସ୍‌ୱାର୍ଥଙ୍କ କବିତା, ଫରାସୀ ବିପ୍ଳବ ଦ୍ୱାରା ଗଭୀର ଭାବରେ ଅନୁପ୍ରେରିତ ହୋଇଥିଲା, ଯଦ୍ୟପି, ପରବର୍ତ୍ତୀ କାଳରେ, ଫରାସୀ ବିପ୍ଳବର ପରିଣତିରେ ବୀତଶ୍ରଦ୍ଧ ହୋଇ,ପ୍ରକୃତି ବା "ନେଚର"ପ୍ରତି କବି ଅଧିକ ଭାବରେ ଆକୃଷ୍ଟ ହୋଇଥିଲେ । ମାତ୍ର ପ୍ରକୃତି ପ୍ରତି କବିଙ୍କର ସେହି ଆକର୍ଷଣ ମଧ୍ୟରେ ଲୁଚି ଥିଲା ଗତାନୁଗତିକ ଓ ପାରମ୍ପାରିକ ସତ୍ତା ବିରୁଦ୍ଧରେ ନିଷ୍ପନ୍ଦ ବିଦ୍ରୋହ । ଶେଲୀଙ୍କ କାବ୍ୟ ସାହିତ୍ୟରେ ମଧ୍ୟ ବିପ୍ଳବର ସେହି ପ୍ରେରଣା ଅସ୍ପଷ୍ଟ ନୁହେଁ । ଚିରନ୍ତନ ବିପ୍ଳବର କବି ବାଇରନ୍‌ଙ୍କ କବିତାରେ ଏହା ଯେପରି ଏକ ଆଗ୍ନେୟ ଆହ୍ୱାନରେ ପରିଣତ ହୋଇ ଅଛି..... ..... ....."

"Etern spirit of the
Chainless minds.
Brightest in dungeons
Liberty thou art."

ସ୍ୱାଧୀନତା ପାଇଁ ଭାରତର ଜାତୀୟ ସଂଗ୍ରାମ ବେଳେ ମଧ୍ୟ ଉଣା ଅଧିକେ ସବୁ ଭାରତୀୟ ସାହିତ୍ୟରେ ଏକ ଉଦ୍ଭାବନ ଦେଖା ଦେଇଥିଲା ଓ ନାନା ଭାବରେ ଭାରତୀୟ ସାହିତ୍ୟର ଚିନ୍ତାନାୟକଙ୍କୁ ଏହା ଯେ ସଂପ୍ରସାରିତ କରିଥିଲା, ସେଥିରେ ସନ୍ଦେହ ନାହିଁ ।

ଆଜି କିନ୍ତୁ ଭାରତୀୟ ସମାଜର କୋଣେ କୋଣେ ପ୍ରବଳ ଅଶାନ୍ତି । "ଅଥରିଟୀ" ଓ "ଏଷ୍ଟାବ୍ଲିସ୍‌ମେଣ୍ଟ" ବିରୁଦ୍ଧରେ ଦିନେ ଦିନେ ବିଦ୍ରୋହର

ରଣଭେରୀ । ଚତାସ୍ଥୁ ସମାଜର ନବକଳେବର ପାଇଁ ସର୍ବତ୍ର ସାଜ ସାଜ ରବ । ହୃଦୟର ନିରୁଦ୍ଧ ଝଡ଼ ବିସ୍ଫୋରଣ କରି ଉଠୁଛି, ମହାନଗରୀର ରାଜପଥ ଠାରୁ ଗ୍ରାମାଞ୍ଚଳର କୃଷି କ୍ଷେତ୍ର ଏପରିକି ଦୁର୍ଗମ..........ଅରଣ୍ୟ ପର୍ଯ୍ୟନ୍ତ । କିନ୍ତୁ ଭାରତୀୟ ସାହିତ୍ୟକୁ ଏହା.....ଉଜ୍ଜୀବିତ କରିପାରୁ ନାହିଁ କାହିଁକି ? ଆଜିର ବୈପ୍ଳବିକ ପରିସ୍ଥିତି, ଭାରତୀୟ ସାହିତ୍ୟରେ ନୂତନ ଦିଗ୍‌ବଳୟ ସମ୍ପ୍ରସାରିତ କରିବା ପରିବର୍ତ୍ତେ, ଏହାକୁ ଯୌନତା ମନ-ସମୀକ୍ଷା, ସ୍ଥିତିବାଦୀ ନୈରାଶ୍ୟ ଶୂନ୍ୟତା ଓ କକ୍ଷଚ୍ୟୁତିର ବଦ୍ଧ ପଲ୍ୱଳରେ ପରିଣତ କରିଛି କାହିଁକି ? ପ୍ରତ୍ୟେକ ସୃଷ୍ଟିଧର୍ମୀ ଲେଖକ ଓ ସମାଜ-ତାତ୍ତ୍ୱିକ ଅନାସକ୍ତ ଭାବରେ ଏହାର ଉତ୍ତର ଅନ୍ୱେଷଣ କରିବା ଆବଶ୍ୟକ ।

ମୂଳତଃ ଆଜିର ସାଂପ୍ରତିକ ସାହିତ୍ୟରେ ଯେଉଁ ପ୍ରବୃତ୍ତି ଅଧିକତର ଭାବରେ ସୁସ୍ପଷ୍ଟ, ତାହା ହେଲା ଆତ୍ମକେନ୍ଦ୍ରିକ ବେଦନା ଓ ବ୍ୟର୍ଥତାର ଅତିରଞ୍ଜିତ ଚିତ୍ରଣ, ଗ୍ଲାନିର ଆର୍ତ୍ତନାଦ, କିଛିଟା ଆସ୍ଫାଳନ ଓ ବିଦ୍ରୋହର ଶୂନ୍ୟଗର୍ଭ ଉତ୍ତେଜନା । ଏ ବିଦ୍ରୋହର ପରିପ୍ରକାଶ ପୁଷ୍କି ଶେଲୀ ବା ବାୟରନଙ୍କ କବିତା ପରି କୌଣସି ସ୍ମରଣୀୟ କବିତାରେ ନୁହେଁ—ନାନା ଦୁର୍ବୋଧ୍ୟ, ଉଦ୍ଭଟ ରଚନାରେ ଏହ ହିଁ ଆଜିର ଅବକ୍ଷୟର ଚେହେରା ।

ବସ୍ତୁତଃ କେବଳ ସାଂପ୍ରତିକ ଓଡ଼ିଆ ସାହିତ୍ୟ ଅଥବା ଭାରତୀୟ ସାହିତ୍ୟରେ ନୁହେଁ । ପାଶ୍ଚାତ୍ୟରେ ମଧ୍ୟ ଏହି ବିଳୟ ଓ ବିକୃତି ସମାଲୋଚକମାନଙ୍କ ଦୃଷ୍ଟିରୁ ବାଦ ପଡ଼ିନାହିଁ । "ଟାଇମ" ପତ୍ରିକା (୧୮ । ୪ । ୭୦) ସାଂପ୍ରତିକ ସାହିତ୍ୟ ସମ୍ପର୍କରେ ଲେଖିଛନ୍ତି ।

"It is significant that this generation of dissenters has failed to produce a literature, or a polemic which is likely to endure"

ଅର୍ଥାତ ଏ ଯୁଗର ବିଦ୍ରୋହୀମାନେ କୌଣସି କାଳଜୟୀ ସାହିତ୍ୟ ସୃଷ୍ଟି କରି ପାରି ନାହାନ୍ତି, କିମ୍ବା ସେମାନଙ୍କ ସାହିତ୍ୟ କାଳୋତ୍ତୀର୍ଣ୍ଣ ହୋଇ ପାରିବ ନାହିଁ । କିନ୍ତୁ ଇତିହାସର ପୃଷ୍ଠା ଓଲଟାଇଲେ ଦେଖାଯାଏ ବିଦ୍ରୋହ ଓ ବିପ୍ଳବ କାଳେ କାଳେ କଥିତ ଓ ଲିଖିତ ଶବ୍ଦ ମଧ୍ୟରେ ହିଁ ଅଧିକତର ଭାବରେ ପ୍ରକାଶ ପାଇ ଆସି ଅଛି । ଫରାସି ବିପ୍ଳବ ଓ ଆମେରିକାର

ସ୍ୱାଧୀନତା ସମୟ ଠାରୁ ଆରମ୍ଭ କରି ସୋଭିଏତ ବିପ୍ଳବ ଓ ଭାରତ ମୁକ୍ତ ସଂଗ୍ରାମ ପର୍ଯ୍ୟନ୍ତ ସବୁ ସଂଗ୍ରାମ, ସଂଘର୍ଷ ଓ ରକ୍ତ ବିପ୍ଳବ ମଧ୍ୟରେ ଏହାର ସତ୍ୟତା ପ୍ରମାଣିତ ହୋଇଥାଏ । ତା' ହେଲେ ଆଜିର ସାହିତ୍ୟ ଅବକ୍ଷୟଗ୍ରସ୍ତ କାହିଁକି ?

ମାର୍ଶାଲ ମାକଲୁହନ ନାମଧେୟ ଜଣେ ସମାଜତାତ୍ତ୍ୱିକ ଏହାର ଗୋଟିଏ ଉତ୍ତର ଦେଇ କହିଛନ୍ତି—ଆଜିର ସମାଜରେ ଶବ୍ଦ ଅପେକ୍ଷା, ଚିତ୍ରର ପ୍ରଭାବ ବେଶୀ । ପ୍ରାଗ୍ ଐତିହାସିକ ଟ୍ରାଇବାଲ ସମାଜରେ ଶବ୍ଦ ଓ ସଙ୍କେତ ମନୁଷ୍ୟକୁ ଗଭୀରତର ଭାବରେ ଆନ୍ଦୋଳିତ କରୁଥିଲା; ସାଂପ୍ରତିକ ସମାଜର ଚେତନା ଏହି ଚିତ୍ର ଓ ସଙ୍କେତ ମାଧ୍ୟମରେ ସେହିପରି ଆନ୍ଦୋଳିତ ହୋଇ-ପାରୁଛି । ଏଥି ପାଇଁ "ଫିଲ୍ମ" ଆଜି ସାହିତ୍ୟର ସ୍ଥାନ ଅଧିକାର କରିଛି ଓ ପପ୍ ଆର୍ଟ, ଭିଜୁଆଲ୍ ଆର୍ଟ ପ୍ରଭୃତିର ଉତ୍ପତ୍ତି ଏଇଠାରେ । ଏ ଯୁଗର ଅନ୍ୟତମ ଚିନ୍ତକ ହ୍ୱରବର୍ଟ ମାରକ୍ୟୁସ୍ଙ୍କ ମତରେ ଆଜିର ଟେକ୍ନୋ-ଲଜିକାଲ ସମାଜରେ କ୍ଷମତା ବା "ପାଓ୍ୱାର" ମୁଷ୍ଟିମେୟ କେତେକଙ୍କଠାରେ କେନ୍ଦ୍ରୀଭୂତ ହୋଇଥିବାରୁ 'ଶବ୍ଦ'ର ସେ ସାର୍ବଭୌମତ୍ୱ ଆଉ ରହିନାହିଁ । ଲିଖିତ ଓ କଥିତ ଶବ୍ଦ ପ୍ରତି ଏ ଅନାଦର ହେତୁ; ଶୃଙ୍ଖଳିତ ଚିନ୍ତା ଓ ତାହାର ପରିପ୍ରକାଶ କାର୍ଯ୍ୟତଃ ଅବାନ୍ତର ହୋଇ ପଡ଼ିଛି । ଆଜିର ସମାଜ ବିପ୍ଳବ ଦେଖୁ ସ୍ମରଣୀୟ ସାହିତ୍ୟ ପରିବର୍ତ୍ତେ ସୃଷ୍ଟି କରିଛି; ଗଣ୍ଡା ଗଣ୍ଡା ହାତ ବୋମା ଆଉ "ମଲୋଟୋଭ କକ୍ଟେଲ" । ଏହା ଫଳରେ ମନୁଷ୍ୟ-ମନୁଷ୍ୟ ମଧ୍ୟରେ ବୌଦ୍ଧିକ ସମ୍ପର୍କ କେବଳ ଯେ ବିଚ୍ଛିନ୍ନ ହୋଇ ପଡ଼ିଛି ତାହା ନୁହେଁ, ତାହା ସହିତ ମଧ୍ୟ ବିଦାୟ ନେଇଚି ଯୁକ୍ତିନିଷ୍ଠ ଚିନ୍ତା । "ଭାଇଓଲେନସ୍" ଓ ଯୌନତା ଏ ପରିସ୍ଥିତିରେ ଅତି ସ୍ୱାଭାବିକ ଭାବରେ ସମାଜର ଏକମାତ୍ର ଅଭିମୁଖ୍ୟ ହୋଇପଡ଼ିଛି । ଆମେରିକାର ସମାଜ ତାତ୍ତ୍ୱିକମାନେ ଏହାର ନାମକରଣ କଲେଣି "Body Rhetoric"..................ମାଂସପେଶୀର ବାଦ୍ୟ ।

ସାମ୍ପ୍ରତିକ ଯୁବ-ସାହିତ୍ୟିକମାନେ ଏ ସମ୍ପର୍କରେ ଗଭୀର ଚିନ୍ତା ଓ ଅନୁଧ୍ୟାନ କରିବା ଆବଶ୍ୟକ ।

ସୁରେନ୍ଦ୍ର ମହାନ୍ତି



ସୌରୀନ୍ଦ୍ର ବାରିକ

## ଦେଖିଲଣି କେତେ ଫୁଲ ଫୁଟିଛି

ତୁଳି ଫୁଙ୍କୁଥିଲେ ଫୁଙ୍କୁଥିବ
ତୁମ ବେଳକୁ ତ ଆଉ ତା' ବେଳ ହେବନି
ଏ ଟିକି ଟିକି ଫୁଲ, ପ୍ରଜାପତିଙ୍କ ଖେଳ
କ'ଣ ସବୁବେଳେ ଥିବ
ଟିକେ ଖାଲି ଦେଖିଯାଅ ।

ସେଦିନ କେତେ ଫୁଲ ରଂକୁଣି ନଥିଲ
ଫୁଲ ଫୁଲ ହୋଇ ପାଗଳା କରି ଦେଉଥିଲ
ମୁଁ କିନ୍ତୁ ଫୁଲ ପାଇଁ ବ୍ୟସ୍ତ ନଥିଲି
ତୁମେ ତ ଥିଲ ।

ଏ ପ୍ରଜାପତି ଯେମିତି ସେଦିନର ସବୁ ବାଛେ କଥା
ଏମାନଙ୍କୁ ଦେଖିଲେ ଆଜି ମନ ଚହଲି ଯାଏ
ମଲା ପ୍ରଜାପତିର ଡେଣାକୁ ପିମ୍ପୁଡ଼ି ଟାଣିଲେ
ସେ ଯେମିତି ଟିକେ ଦୋହଲି ଯାଏ
ଠିକ୍ ସେଇମିତି ।

ଦେଖିଲଣି କେତେ ଫୁଲ ଫୁଟିଛି ।



ଦେ ଖି ଲ ଣି କେ ତେ ଫୁ ଲ ଫୁ ଟି ଛି



ଡକ୍ଟର ଭଗବାନ ପଣ୍ଡା

# ଗଜପତି ପ୍ରତାପରୁଦ୍ରଦେବ

## (ସମୀକ୍ଷାର ଏକ ନୂତନ ଦିଗନ୍ତ)

ଓଡ଼ିଶା ଇତିହାସରେ ସୂର୍ଯ୍ୟବଂଶର ରାଜତ୍ୱକାଳରେ (୧୪୩୫-୧୫୩୫ ଖ୍ରୀ.ଅ) ତିନିଜଣ ଗଜପତିଙ୍କ ନେତୃତ୍ୱରେ ଓଡ଼ିଶାର ଧର୍ମ, ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରରେ ବହୁ ଉଲ୍ଲେଖଯୋଗ୍ୟ ଘଟଣା ଘଟିଥିବାର ଜଣାଯାଏ। ସୂର୍ଯ୍ୟବଂଶର ପ୍ରତିଷ୍ଠାତା ପ୍ରଥମ ଗଜପତି କପିଳେନ୍ଦ୍ର ଦେବ ଓ ଦ୍ୱିତୀୟ ଗଜପତି ପୁରୁଷୋତ୍ତମ ଦେବଙ୍କୁ ଓଡ଼ିଶାର ସର୍ବବିଧ ସ୍ଥିତିର ନାୟକ ରୂପେ ଚିତ୍ରଣ କରାଯାଇଛି। କିନ୍ତୁ, ଐତିହାସିକମାନେ ତୃତୀୟ ଗଜପତି ପ୍ରତାପରୁଦ୍ର ଦେବଙ୍କୁ ବିବିଧ ବିପର୍ଯ୍ୟୟର କାରଣ ରୂପେ ଅଭିହିତ କରିଛନ୍ତି। ସେ ଦାକ୍ଷିଣାତ୍ୟ ଯୁଦ୍ଧରେ ପରାଜିତ ହୋଇ ବିଜୟ ନଗରର ରାଜା କୃଷ୍ଣଦେବ ରାୟଙ୍କୁ ଜାମାତା ରୂପେ ବରଣ କରିଥିଲେ ଏବଂ ମହାପ୍ରଭୁ ଶ୍ରୀ ଚୈତନ୍ୟଙ୍କ ଠାରୁ ଦୀକ୍ଷା ଗ୍ରହଣ କରି ରାଜ୍ୟ ପରିଚାଳନାରେ ବିମୁଖ ହୋଇଥିଲେ ବୋଲି ଯେଉଁ କଳ୍ପିତ ଇତିହାସ ପ୍ରଚଳିତ ହୋଇଛି ସେ ବିଷୟରେ ଓଡ଼ିଶା ବାହାରର ଆଲୋଚକମାନଙ୍କ ମତାମତ ଓଡ଼ିଆ ପାଠକମାନଙ୍କ ଆଗରେ ଉପସ୍ଥାପିତ କରିବା ଏହି ଲେଖାର ମୁଖ୍ୟ ଉଦ୍ଦେଶ୍ୟ।

ଗଜପତି ପ୍ରତାପରୁଦ୍ର ଦେବ ଗଜପତି ପୁରୁଷୋତ୍ତମ ଦେବଙ୍କ (୧୪୬୬-୧୪୯୮ ଖ୍ରୀ:ଅ:) ପୁତ୍ର ଓ ସୂର୍ଯ୍ୟବଂଶର ପ୍ରତିଷ୍ଠାତା ଗଜପତି କପିଳେନ୍ଦ୍ର ଦେବଙ୍କ ପୌତ୍ର ଭାବେ ସୁବିଦିତ। କିନ୍ତୁ ସ୍ମୃତିକାର ଲକ୍ଷ୍ମୀଧର ଭଟ୍ଟମିଶ୍ରଙ୍କ ପ୍ରଣୀତ ଓ 'ସରସ୍ୱତୀ ବିଳାସ' ସ୍ମୃତି ଗ୍ରନ୍ଥରେ ସେ ପୁରୁଷୋତ୍ତମଙ୍କ ପୁତ୍ର ଓ ତନୟ ରୂପେ ବର୍ଣ୍ଣିତ। (୧) କୃଷ୍ଣଦେବ ରାୟଙ୍କ ପ୍ରଦତ୍ତ ଶ୍ରୀ ଶୈଳ ଅଭିଲେଖ ବର୍ଣ୍ଣିତ ବୀରଭଦ୍ର ରାୟଙ୍କୁ ପ୍ରତାପରୁଦ୍ର ମହାରାଜଙ୍କ ପୁତ୍ରଭାବେ କେତେକ ଆଲୋଚକ ମତବ୍ୟକ୍ତ କରିଛନ୍ତି। (୨) ଐତିହାସିକ ମନମୋହନ ଚକ୍ରବର୍ତ୍ତୀ ସୂର୍ଯ୍ୟ ବଂଶୀୟ ରାଜାମାନଙ୍କର ବଂଶାବଳୀ ଆଲୋଚନା ପ୍ରସଙ୍ଗରେ କାଳୁଆ ଦେବ ଓ କଖାରୁଆ ଦେବଙ୍କୁ ପ୍ରତାପ ରୁଦ୍ରଙ୍କ ପୁତ୍ରରୂପେ ଉଲ୍ଲେଖ କରିଛନ୍ତି। (୩) ବହୁ ଐତିହାସିକ

ଗଜପତି ପ୍ରତାପରୁଦ୍ର ଦେବ ମହାରାଜ ବିଜୟନଗରର ରାଜା କୃଷ୍ଣଦେବ ରାୟଙ୍କ ଦ୍ୱାରା ପରାଜିତ ହୋଇଥିବାର ମତବ୍ୟକ୍ତ କରିଥିଲେ ମଧ୍ୟ ପରବର୍ତ୍ତୀ ଅନୁଚ୍ଛେଦରୁ ତାହାର ସତ୍ୟାସତ୍ୟ ବିଚାର କରାଯାଇ ପାରେ ।

ଐତିହାସିକ ଡି. ରମଦାସଙ୍କ ଆଲୋଚନାରେ ଗଜପତି ପ୍ରତାପରୁଦ୍ର ଦେବଙ୍କ ବିଷୟରେ କେତେକ ସତ୍ୟ ଉଦ୍‌ଘାଟିତ ହୋଇଛି । (୪) ବେଣୁ ଗୋପାଳ ଚେଟିଙ୍କ ସମ୍ପାଦିତ 'ନେଲ୍ଲୋର ଜିଲ୍ଲା ଅଭିଲେଖ' ଅନ୍ତର୍ଗତ ୨୧ ଓ ୨୨ ସଂଖ୍ୟକ ତାମ୍ରଫଳକ ଦୁଇଟି କାକତୀବଂଶୀୟ ରାଜା ବୀରଭଦ୍ର ରାୟଙ୍କ ପ୍ରଦତ୍ତ ବୋଲି ସିଦ୍ଧାନ୍ତ ନିଆଯାଇଛି । (୫) ତନ୍ମଧ୍ୟରୁ ପ୍ରଥମଟି କୋଣ୍ଡାବିଡ଼ୁର ରାଜା ବୀରଭଦ୍ର ରାୟ ୧୫୦୯-୧୫୧୦ ଖ୍ରୀଷ୍ଟାବ୍ଦ, ଜାନୁୟାରୀ ମାସ ୧୨ତାରିଖ ଗୁରୁବାର ଦିନ ପ୍ରଦାନ କରିଛନ୍ତି । ସେହି ବୀରଭଦ୍ର ରାୟ କୃଷ୍ଣଦେବ ରାୟଙ୍କ ଦ୍ୱାରା ପରାଜିତ ହୋଇଥିଲେ ବୋଲି 'ଶ୍ରୀ ଶୈଳ' ଓ 'ତିରୁମଲାଇ' ମନ୍ଦିର ଅଭିଲେଖରେ ବହୁ ଗର୍ବର ସହିତ ଘୋଷଣା କରାଯାଇଛି । ସେହି ବୀରଭଦ୍ର ରାୟ କେବେ ହେଲେ ଗଜପତି ପ୍ରତାପରୁଦ୍ର ଦେବଙ୍କ ପୁତ୍ର ହେବା ସମ୍ଭବ ନୁହେଁ । କାରଣ ଉକ୍ତ ୨୧ ସଂଖ୍ୟକ ତାମ୍ରଫଳକ ବା ସୋମବର ଗ୍ରାମ ଅଭିଲେଖ ବର୍ଣ୍ଣିତ ଉପାଧି ଓ ଉପନାମରୁ ବୀରଭଦ୍ରଙ୍କ ପିତା ମାତା ପୃଥକ୍ ଥିବାର ଜଣାଯାଏ—

"ଶ୍ରୀମତ୍ପରମେ ଭଟ୍ଟାରକ ପରମ ବୈଷ୍ଣବ ପରମମାହେଶ୍ୱର ରୂପନାରାୟଣ ନିରନ୍ତରଭ୍ୟସ୍ତବିଦ୍ୟାଭିନନ୍ଦ ପଣ୍ଡିତରମାବତାର ବୀରକନ୍ଦର୍ପାବତାର ସମରନିଃଶଙ୍କ ରଣରଙ୍ଗ ଦ୍ରାବିଡ଼ମଣ୍ଡଳେଶ୍ୱର ମହାରାୟ ନବକୋଟି କର୍ଣ୍ଣାଟ କଳ୍ବରଗେଶ୍ୱର ମହାରାୟ ମହାନୁଭବ ଶ୍ରୀ ବୀରଭଦ୍ର ରାୟଙ୍କର ସମସ୍ତ ୨୩ଅଙ୍କ ଶ୍ରାହି କୁମ୍ଭ ଶୁକ୍ଳ ୧୫ ଗୁ:' ।. (୬)

ଉଦ୍ଧୃତ ଅଭିଲେଖ ସହିତ ଗଜପତି ପୁରୁଷୋତ୍ତମ ଦେବଙ୍କ ପୋତାବରମ୍ ଅଭିଲେଖର ଯଥେଷ୍ଟ ସାମଞ୍ଜସ୍ୟ ଥିବାର ପରିଲକ୍ଷିତ ହୁଏ । (୭) ସୂର୍ଯ୍ୟବଂଶୀୟ ଗଜପତି କପିଳେଶ୍ୱର ଦେବଙ୍କଠାରୁ ଉକ୍ତ ଉପାଧିଗୁଡ଼ିକର ବ୍ୟବହାର ଚଳି ଆସୁଥିଲା । ଏହାର ସମୟ ସଙ୍କେତ ମଧ୍ୟ 'ଭେଲିଚେର୍ଲ୍' ତାମ୍ର ଫଳକରେ ବ୍ୟବହୃତ ହୋଇଛି । (୮) ତେଣୁ ଉକ୍ତ ଅଭିଲେଖ ବର୍ଣ୍ଣିତ ବୀରଭଦ୍ର ରାୟ ଓଡ଼ିଶାର ଗଜପତି ବଂଶୀୟ ବୋଲି ନିଃସନ୍ଦେହରେ କୁହାଯାଇପାରେ । ପ୍ରସଙ୍ଗତଃ ଦାବଣଗିରି (୯) ତାଲୁକ ସଂଖ୍ୟା ୪୩ ଓ କୁନିଗଲ (୧୦) ତାଲୁକ ସଂଖ୍ୟା- ୩୭ ଅଭିଲେଖ ଦୁଇଟିର ପାଠକୁ ଲକ୍ଷ୍ୟ କରାଯାଇ-

ପାରେ । ଏତଦ୍‌ବ୍ୟତୀତ ତିରୁପତି ତିରୁମଲାଇ ଦେବସ୍ଥାନ ଅଭିଲେଖର ଦ୍ୱିତୀୟ ଭାଗରେ ୫୮ ଓ ୬୦ ସଂଖ୍ୟକ ଯେଉଁ ଅଭିଲେଖ ଦୁଇଟି ପ୍ରକାଶ ପାଇଛି ସେଥିରେ ମଧ୍ୟ ଅନୁରୂପ ଉପାଧିର ଅବତାରଣା କରାଯାଇଛି । ତନ୍ମଧ୍ୟରୁ ପ୍ରଥମଟିରେ କାକତୀବଂଶୀୟ ବବୁ ପିନ୍ନନ ଭୂପତିଙ୍କର ପୁତ୍ରଦ୍ୱୟଙ୍କ ପରିଚୟ ସହିତ ଜ୍ୟେଷ୍ଠପୁତ୍ର ନରସିଂହ ନାୟକଙ୍କ ବିରୁଦାବଳୀ ଏବଂ ଦ୍ୱିତୀୟଟିରେ କନିଷ୍ଠ ପୁତ୍ର କେଶବ ଭୂପତିଙ୍କର ପରିଚୟ ମିଳେ । (୧୧) ଉକ୍ତ ଅଭିଲେଖ ଦୁଇଟିରେ ଥିବା ଉପାଧି ଓ କାକତୀୟ ବୀରଭଦ୍ର ରାୟଙ୍କ ପ୍ରଦତ୍ତ ତାମ୍ରଫଳକ ବର୍ଣ୍ଣିତ ଉପାଧି ସମାନଭାବେ ଉଲ୍ଲିଖିତ ଅଛି । କାକତୀବଂଶୀୟ ଖଡ୍ଗ-ନାରାୟଣ ଉପାଧି ପରିବର୍ତ୍ତେ ଅଭିନବ ପରଶୁରାମାବତାର, ସମାନାକୃତି ପରିବର୍ତ୍ତେ କନ୍ଦର୍ପାବତାର ଓ ହସନ୍ତରାଳ ବିଶ୍ରାନ୍ତ ଯଶସ୍କର ପରାକ୍ରମ ପରିବର୍ତ୍ତେ ସମର ନିଃଶଙ୍କ ରଣରଙ୍ଗ ଉପାଧି ବୀରଭଦ୍ର ରାୟଙ୍କଠାରେ ବ୍ୟବହୃତ ହୋଇଛି । ବୀରଭଦ୍ର ରାୟ ପ୍ରତାପରୁଦ୍ର ମହାରାଜାଙ୍କ ପୁତ୍ର ଥିଲେ ବୋଲି ବର୍ଣ୍ଣିତ ହୋଇଛି । (୧୨) ତେଣୁ ଖୁବ୍ ସମ୍ଭବତଃ ସେ ମାତୃ ଗୌରବ ରକ୍ଷା ପାଇଁ କାକତୀୟ ଉପାଧି ବ୍ୟବହାର କରୁଥିଲେ ଏବଂ ଦୌହିତ୍ର ବିଧି ଅନୁ-ସାରେ ସେ କାକତୀୟ ଉପାଧିର ପୁନଃ ପ୍ରଚଳନ କରିଥିଲେ । କାକତୀୟ ନରସିଂହ ନରନାୟକଙ୍କର ଏକମାତ୍ର କନ୍ୟାକୁ ଗଜପତି ପ୍ରତାପରୁଦ୍ର ଦେବ ବିବାହ କରିଥିବାର ଅନୁମାନ କରାଯାଏ ।

କୃଷ୍ଣଦେବ ରାୟଙ୍କ ଅଭିଲେଖ ତଥା ବୀରଭଦ୍ର ରାୟଙ୍କ ତାମ୍ରଫଳକରୁ ଜଣାଯାଏ ଯେ ବୀରଭଦ୍ର ୧୫୧୫ ଖ୍ରୀ: ଅ: ପୂର୍ବରୁ କୃଷ୍ଣଦେବଙ୍କ ସାମନ୍ତରାଜା ଥିଲେ । କିନ୍ତୁ ନିମ୍ନୋଦ୍ଧୃତ ବେଲ୍ଲୋପଲ୍ଲୀ ଅଭିଲେଖରୁ ଜଣାଯାଏ ଯେ ବୀର-ଭଦ୍ର ରାୟ କୃଷ୍ଣଦେବ ରାୟଙ୍କ ଗୌରବ ପ୍ରଖ୍ୟାପନ ଉଦ୍ଦେଶ୍ୟରେ କର୍ଣ୍ଣାଟୀ ଭାଷାରେ ଏହା ପ୍ରଦାନ କରିଥିଲେ.....

"ଯୁବସମ୍ବତ୍ସରଦ୍ କାର୍ତ୍ତିକ ଶୁ ଳ ର ଲୁ ଗଜପତି କୁମାର ବୀରଭଦ୍ର ରାୟରୁ ଶ୍ରୀକୃଷ୍ଣରାୟ ରିବେଧର୍ମବନ୍ଦୋବସ୍ତି କୁଡ୍ଡେ ମଢେକୁ" । (୧୩)

ଉକ୍ତ ଅଭିଲେଖଟି ଅବତରଣା ଅନୁସାରେ ଜାନୁଆରୀ ୨୪ ତାରିଖ ୧୫୧୦ ଖ୍ରୀଷ୍ଟାବ୍ଦ ବୋଲି ଜଣାଯାଏ । ଯଦି ୧୫୧୦ ଖ୍ରୀଷ୍ଟାବ୍ଦ ୨୩ ଅଙ୍କ ହେବ ତେବେ ବୀରରୁଦ୍ର ରାୟଙ୍କ ରାଜତ୍ୱ ୧୪୯୦ ଖ୍ରୀଷ୍ଟାବ୍ଦରେ ଆରମ୍ଭ ହୋଇଥିବ । ୧୫ ବର୍ଷ ପରେ କ୍ଷତ୍ରିୟମାନେ ସାବାଳକ ହୁଅନ୍ତି । ଏହି ପରମ୍ପରା ଗଜପତି ପରିବାରରେ ପ୍ରଚଳିତ ଥିବାର ଦେଖାଯାଏ । ଗଜପତି ପୁରୁଷୋତ୍ତମ ଦେବଙ୍କ

ମୃତ୍ୟୁ ବେଳକୁ (୧୪୯୭-ଖ୍ରୀ: ଅ:) ପ୍ରତାପରୁଦ୍ର ଦେବଙ୍କ ବୟସ ୧୭ବର୍ଷ ହୋଇଥିଲା । (୧୪) ଶ୍ରୀକାକୁଲମ ମନ୍ଦିରରେ ଥିବା ୧୪୯୪ ଖ୍ରୀଷ୍ଟାବ୍ଦର ଅଭିଲେଖଟି ପୁରୁଷୋତ୍ତମ ଦେବଙ୍କ ୩୫ ଅଙ୍କରେ ଖୋଦିତ ହୋଇଥିଲା । ପ୍ରତାପରୁଦ୍ର ଯେତେବେଳେ କୁମାର ମଣ୍ଡଳର ରାଜ୍ୟପାଳ ଥିଲେ ସେତେବେଳକୁ ତାଙ୍କ ବୟସ ନିଶ୍ଚିତ ଭାବେ ପନ୍ଦର ବର୍ଷ ବା ତହିଁରୁ ଅଧିକ ହୋଇଥିଲା । ତେଣୁ ୧୪୯୦-୯୧ ଖ୍ରୀଷ୍ଟାବ୍ଦରେ ରାଜ୍ୟପାଳ ହେବା ବେଳକୁ ରାଜକୁମାର ବୀରରୁଦ୍ର ରାୟ ବା ଗଜପତି ପ୍ରତାପରୁଦ୍ର ଦେବଙ୍କର ଏଗାର ବର୍ଷ ହୋଇଥିଲା । କିନ୍ତୁ କୋଣ୍ଡାବିଡ୍ର ସିଂହାସନରେ ଅଭିଷିକ୍ତ ହେବା ବେଳକୁ ( ୧୪୯୦ ଖ୍ରୀ: ଅ: ) ବୀରଭଦ୍ର ରାୟଙ୍କୁ ପନ୍ଦର ବର୍ଷ ହୋଇଥିଲା । ଏ କ୍ଷେତ୍ରରେ ଏକାଦଶ ବର୍ଷୀୟ ପ୍ରତାପରୁଦ୍ର ଦେବ କେବେହେଲେ ପଞ୍ଚଦଶ ବର୍ଷୀୟ ବୀରଭଦ୍ର ରାୟଙ୍କ ପିତା ହେବା ସମ୍ଭବ ନୁହେଁ । ତେଣୁ ଗଜପତି ବଂଶୀୟ ଅନ୍ୟ କେହି ବୀରଭଦ୍ର ରାୟଙ୍କ ପିତାଥିଲେ, କାରଣ ସେ ସୂର୍ଯ୍ୟବଂଶୀୟ ଉପାଧିମାନ ବ୍ୟବହାର କରୁଥିଲେ ।

ବର୍ତ୍ତମାନ ଗଜପତି ପ୍ରତାପରୁଦ୍ର ଦେବଙ୍କ ପ୍ରଦତ୍ତ ଗୁଣ୍ଡିମେଳା ତାମ୍ରଫଳକଟିରେ ଉଲ୍ଲେଖ ଥିବା ଉପାଧିମାନ ତାଙ୍କ ପ୍ରଦତ୍ତ ଭେଲିଚେର୍ଲା ଓ ଅନ୍ୟାନ୍ୟ ତାମ୍ରଫଳକ ଠାରୁ ପୃଥକ ହେଲେ ମଧ୍ୟ ପୁରୁଷୋତ୍ତମ ଦେବଙ୍କ ପ୍ରଦତ୍ତ ପୋତାବରମ (୧୫) ଅଭିଲେଖ ତଥା ସୋମବର ଗ୍ରାମ ଅଭିଲେଖ ସହିତ ଅନେକାଂଶରେ ମିଶୁଥିବାର ଦେଖାଯାଏ

"ବୀର ଶ୍ରୀ ଗଜପତି ଗୌଡ଼େଶ୍ୱର ନବକୋଟି କର୍ଣ୍ଣାଟ କଲୁବରିଗେଶ୍ୱର କାକେତ ରୁଦ୍ର ବେଙ୍କଟ ରାୟ ଶ୍ରୀ ପ୍ରତାପରୁଦ୍ର ଦେବ ମହାରାଜାଙ୍କର ବିଜୟ ରାଜ୍ୟେ କାକୋଲ୍ଲି ତିମ୍ମା ପଣ୍ଡିତୁଲକୁ ଦିଲ୍ଲା ଧର୍ମାଶାସନପଟ୍ଟା ସମସ୍ତ ୧୯ନାଙ୍କ ଶ୍ରୀହି ମକର କୃଷ୍ଣ ୩୯ ସୋ " (୧୬)

ଉକ୍ତ ଅଭିଲେଖ ବର୍ଣ୍ଣିତ କାକତୀ ରୁଦ୍ର ଭେଙ୍କଟ ରାୟ ପ୍ରତାପ ରୁଦ୍ର ମହାରାଜ ରୂପେ ପରିଚିତ । ତଦନୁରୂପ ବର୍ଣ୍ଣନା ମଧ୍ୟ ଗୁଣ୍ଡଲ ପଲେମ (୧୭) ଅଭିଲେଖରେ ଥିବାର ଦେଖାଯାଏ । କୃଷ୍ଣଦେବ ରାୟ ଉଦୟଗିରି ଅଭିଲେଖରେ (୧୮) କହିଛନ୍ତି ଯେ ସେ ୧୫୧୪ ଖ୍ରୀ: ଅ ରେ ଗଜପତି ପ୍ରତାପରୁଦ୍ର ଦେବଙ୍କୁ ଯୁଦ୍ଧରେ ହରାଇଥିଲେ । ଏହି ଅଭିଲେଖର ସମୟ ୧୪୮୪ ଖ୍ରୀ:ଅ: ବୋଲି ଡି. ରାମଦାସ ସନ୍ଧାନରେ ଉପନୀତ ହୋଇଛନ୍ତି । ତେଣୁ ଖ୍ରୀ

ସମ୍ଭବତଃ ପ୍ରତାପରୁଦ୍ର ଦେବ ୧୪୬୮-୬୯ ଖ୍ରୀ:ଅ: ରେ ସିଂହାସନରେ ଅଭିଷିକ୍ତ ହୋଇଥିଲେ । ଉଦୟଗିରି ରାଜାଙ୍କ ପ୍ରଦତ୍ତ ଗୁଣ୍ଡିମେଲାପଲେମ ଅଭିଲେଖର ସମୟ ଫେବୃଆରୀ ୮ ତାରିଖ ୧୪୮୭ ଖ୍ରୀ.ଅ: ବୋଲି ନିର୍ଣ୍ଣୟ କରାଯାଇଛି । କାକତୀରୁଦ୍ର ଭେଙ୍କଟରାୟ ପୁରୁଷୋତ୍ତମ ଗଜପତିଂକ ପୁତ୍ର ଓ ବୀରଭଦ୍ର ରାୟଙ୍କ ପିତା ଥିଲେ । କଟକ ରାଜବଂଶାବଳୀ ତଥା ମାଦଳା ପାଞ୍ଜି ଅନୁସାରେ ପୁରୁଷୋତ୍ତମ ଦେବ କାଞ୍ଚୀ ରାଜକନ୍ୟା ପଦ୍ମାବତୀଙ୍କୁ ବିବାହ କରିଥିଲେ । ଏ ସମସ୍ତ ବିଷୟ 'କାଞ୍ଚୀ କାବେରୀ' ଗ୍ରନ୍ଥରେ ବର୍ଣ୍ଣିତ ହୋଇଛି । ଏହାର ଐତିହାସିକ ପ୍ରସଙ୍ଗ ନିମ୍ନମତେ ଆଲୋଚନା କରାଯାଇ-ପାରେ—

କାକତୀୟ ନରସିଂହ ନରନାୟକ ଓ କେଶବ ଭୂପତି ପାଣ୍ଡ୍ୟ ରାଜାଙ୍କୁ ହରାଇଥିଲେ ଏବଂ ଶାଲ୍ୱ ନରସିଂହ ଦେବଙ୍କୁ ଉଦୟଗିରି ଯୁଦ୍ଧରେ ହରାଇ ତାଙ୍କୁ ବନ୍ଦୀକରି ପୁରୁଷୋତ୍ତମ ଦେବଙ୍କୁ ଅର୍ପଣ କରିଥିଲେ । କପିଳେଶ୍ୱର ଦେବଙ୍କ ଦ୍ୱାରା ଦକ୍ଷିଣର କେତେକ ରାଜା ପୁରସ୍କୃତ ହୋଇଥିଲେ ବୋଲି ଜଣାଯାଏ । ଜଟାବିଳି ଦାସ ମବଲିବଣ ରାୟ ନାମରେ ଜଣେ ରାଜା ୧୪୫୩ ରେ ପାଣ୍ଡ୍ୟ ଦେଶରେ ରାଜତ୍ୱ କରୁଥିଲେ । (୧୯) କୁମାର ହମ୍ୱୀର ମହାପାତ୍ର ଯୁଦ୍ଧଯାତ୍ରା କରି ଦକ୍ଷିଣ ସାଗରରେ ତାଙ୍କର ଖଡ୍ଗଧୌତ କରିଥିବାର ଜଣାଯାଏ । ଉପଯୁକ୍ତ ବିବରଣକୁ ଏକତ୍ର କରି ଦେଖିଲେ କଟକ ରାଜବଂଶା-ବଳୀ ବର୍ଣ୍ଣିତ ଗୋଦାବରୀ ନଦୀକୁ କାବେରୀ ରୂପେ ଏବଂ କାଞ୍ଚୀରାଜାଙ୍କୁ ପାଣ୍ଡ୍ୟନୃପତି ତଥା ଜଗନ୍ନାଥ ବଳଭଦ୍ର ଦୁଇଭାଇଙ୍କୁ କାକତୀୟ ପୂର୍ବୋକ୍ତ ଦୁଇ ଭାଇରୂପେ ଗ୍ରହଣ କରାଯାଇପାରେ । କାବେରୀ ନଦୀର ଦକ୍ଷିଣ ଭାଗରେ ଅବସ୍ଥିତ ପାଣ୍ଡ୍ୟ ନଗରୀର ଶାସକଙ୍କୁ ପଦାନତ କରିବାରେ କାକତୀୟ ଭ୍ରାତୃଦ୍ୱୟ ଯେଉଁ ପ୍ରକାର ବୀରତ୍ୱ ଦେଖାଇଥିଲେ ସେଥିପାଇଁ ଓଡ଼ିଶାର ଗଜପତି ମହାରାଜଙ୍କଠାରୁ 'ପାଣ୍ଡ୍ୟମୁଜଳ ଖଣ୍ଡନୋଦଣ୍ଡ କେଶରୀ' ଉପାଧି (୨୦) ପାଇଥିବା ମନେହୁଏ । କାକତୀ ମୁଖ୍ୟଙ୍କ ସହିତ ସମ୍ପର୍କ ସ୍ଥାପନ ଏବଂ ପୂର୍ବୋକ୍ତ ଭ୍ରାତୃଦ୍ୱୟଙ୍କ ଭଗ୍ନୀ ପଦ୍ମାବତୀର ଗଜପତି ମହାରାଜାଙ୍କ ସହିତ ବିବାହ ୧୪୫୩ ଖ୍ରୀ ଅ: ପୂର୍ବରୁ ସମ୍ପାଦିତ ହୋଇଥିଲା । ଏହା ହିଁ କାକତୀୟ ଭେଙ୍କଟାଦ୍ରି ଓ ଉତ୍କଳୀୟ ଗଜପତିଙ୍କ ଦୃଢ଼ ବନ୍ଧୁତାର କାରଣ । ଗ୍ରନ୍ଥ ବର୍ଣ୍ଣିତ ବିବରଣୀରୁ ଜଣାଯାଏ ଯେ ପୁରୁଷୋତ୍ତମ ଦେବ ଯେପରି ଅତ୍ୟନ୍ତ ସୁନ୍ଦର ପୁରୁଷ ଥିଲେ ସେହିପରି ଶିକ୍ଷିତ ଜ୍ଞାନୀ ଓ ଯୋଦ୍ଧା ଥିଲେ । ଖୁବ୍ ସମ୍ଭବତଃ ସେ କାଞ୍ଚୀ ରାଜ-କନ୍ୟାଙ୍କୁ ପ୍ରେମ କରୁଥିଲେ ଏବଂ ଉଭୟଙ୍କ ବିବାହ ପରେ ଜନ୍ମିତ ପୁତ୍ର କାକତୀରୁଦ୍ର ଭେଙ୍କଟରାୟ ନାମରେ ନାମିତ ହୋଇଥିବେ ।

କର୍ଣ୍ଣାଟ ବିଜୟ ପରେ ପୁରୁଷୋତ୍ତମ ଦେବ ଉଦୟଗିରିରେ ଶାସକ ରୂପେ ଅବସ୍ଥାପିତ ହୋଇଥିଲେ । କୁମାର ଈଶ୍ୱର ଦେବ ଓ୍ୱାରଙ୍ଗଲରେ (ତେଲିଙ୍ଗାନା) ଓ କୁମାର ହମ୍ୱୀର ଦେବ କୋଣ୍ଡାବିଡ୍ଡୁ (କଳବର୍ଗ) ରାଜ୍ୟର ରାଜ୍ୟପାଳ ହୋଇଥିଲେ । ପୁରୁଷୋତ୍ତମ ଦେବ ୧୪୬୬-୬୭ ଖ୍ରୀ:ଅ: ରେ ଗଜପତି ସିଂହାସନରେ ଅଭିଷିକ୍ତ ହେବାପାଇଁ ଓଡ଼ିଶା ଆସିଥିଲେ ।

ତେଣୁ କାକତୀ ରୁଦ୍ର ଓ ଗଜପତି ପ୍ରତାପରୁଦ୍ର ଦେବ ପୁରୁଷୋତ୍ତମ ଦେବଙ୍କ ଦୁଇ ରାଣୀଙ୍କର ଦୁଇପୁତ୍ର ରୂପେ ପରିଚିତ । କାକତୀରୁଦ୍ରଙ୍କର ପଚିଶ ବର୍ଷ ବୟସ ବେଳେ ପ୍ରତାପରୁଦ୍ର ଦେବ ଜନ୍ମ ଗ୍ରହଣ କରିଥିଲେ 'ଏବଂ' କାକତୀ ରୁଦ୍ରଙ୍କ ପୁତ୍ର ବୀରଭଦ୍ର ରାୟ ପ୍ରତାପରୁଦ୍ର ଦେବଙ୍କ ଠାରୁ ମାତ୍ର ତିନିବର୍ଷ ବୟସରେ ବଡ଼ ଥିଲେ । ବର୍ତ୍ତମାନ କୃଷ୍ଣଦେବ ରାୟଙ୍କ ଦ୍ୱାରା ପରାଜିତ ପ୍ରତାପରୁଦ୍ର ଓଡ଼ିଶାର ଗଜପତି ପ୍ରତାପରୁଦ୍ର ଦେବ ନୁହନ୍ତି ବୋଲି କୁହାଯାଇପାରେ । କିନ୍ତୁ ନାମ ସାମ୍ୟ ହେତୁ ଗଜପତି ପ୍ରତାପରୁଦ୍ର ଦେବଙ୍କ ପରାଜୟ ଓଡ଼ିଶା ଇତିହାସରେ ବର୍ଣ୍ଣିତ ହୋଇଛି ।

ପରାଜିତ ଶାଳୁ ନରସିଂହ ପୁରୁଷୋତ୍ତମ ଦେବଙ୍କ ଓଡ଼ିଶା ପ୍ରତ୍ୟାବର୍ତ୍ତନ ପରେ ଉଦୟଗିରି ରାଜ୍ୟ ପୁନର୍ବାର ଆକ୍ରମଣ କରିଥିଲେ । କାକତୀ ନରସିଂହ ଓ କେଶବ ଭୂପତି ବାଳକ ରାଜା ବୀର ରୁଦ୍ରର ରାଜ୍ୟ ରକ୍ଷା ପାଇଁ ଶାଳୁ ସହିତ ଯୁଦ୍ଧରେ ବ୍ୟାପୃତ ଥିବା ବେଳେ ପୁରୁଷୋତ୍ତମ ଦେବ ଉପସ୍ଥିତ ହୋଇ ଶାଳୁକୁ ପରାଜିତ କରିବା ସଙ୍ଗେସଙ୍ଗେ ଉଦୟଗିରି ରାଜ୍ୟର ସମସ୍ତ ଅଧିକାରରୁ ତାକୁ ବଞ୍ଚିତ କରିଥିଲେ । ଏ ସମସ୍ତ ଘଟଣା କାକତୀ ଭେଙ୍କଟରାୟ ବା କୁମାର ପ୍ରତାପରୁଦ୍ରଙ୍କ ଉଦୟଗିରି ରାଜସିଂହାସନରେ ଅଭିଷିକ୍ତ ହେବ ବର୍ଷ ହିଁ ଘଟିଥିବାର ରାଜବେଲୁ ତାମ୍ର ଫଳକରୁ ଜଣାଯାଏ । ପୁରୁଷୋତ୍ତମ ଦେବଙ୍କର ଏହି ଅଭିଯାନ କାଳରେ ସାନଭାଇ ହମ୍ୱୀର ଦେବ ମଧ୍ୟ ପରାଜିତ ହୋଇଥିଲେ ସେଥିପାଇଁ ପୁରୁଷୋତ୍ତମ ଦେବଙ୍କୁ ହମ୍ୱୀର ମାହାରିପୁ ଭାବେ 'ସରସ୍ୱତୀ ବିଳାସ' ରେ ବର୍ଣ୍ଣନା କରାଯାଇଛି । ହମ୍ୱୀରର ପରାଜୟ ପରେ ବୀରଭଦ୍ର ରାୟ କୋଣ୍ଡାବିଡ୍ଡୁ ରାଜ୍ୟର ରାଜ୍ୟପାଳ ରୂପେ ଅବସ୍ଥାପିତ ହେଲେ । ଖ୍ରୀଷ୍ଟାବ୍ଦ ୧୫୧୩ ୧୪ ରେ କୃଷ୍ଣଦେବ ରାୟଙ୍କ ଉଦୟଗିରି ଆକ୍ରମଣ ବେଳେ କାକତୀ ରୁଦ୍ର ଭେଙ୍କଟ ରାୟଙ୍କୁ ଛପନ ବର୍ଷ ବୟସ ହୋଇଥିବାରୁ ଯୁଦ୍ଧରେ ପରାଜିତ ହେବାର ସମ୍ଭାବନା ଥଲା । ତାଙ୍କ ପୁତ୍ର ଅଠତିରିଶ ବର୍ଷ ବୟସ୍କ ବୀରଭଦ୍ର ରାୟ ଜଣେ ଅଧିନାୟକ ହୋଇ ମଧ୍ୟ କୃଷ୍ଣଦେବ ରାୟଙ୍କ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରି ନଥିଲେ କି ଯୁଦ୍ଧରେ ପିତାଙ୍କୁ ସାହାଯ୍ୟ

କରି ନଥିଲେ । ପରିଶେଷରେ ଭେଙ୍କଟ ରାୟ ବା ପ୍ରତାପରୁଦ୍ର କୃଷ୍ଣଦେବ ରାୟଙ୍କ ଦ୍ୱାରା ପରାଜିତ ହୋଇଥିଲେ ।

ଏହି ପରିପ୍ରେକ୍ଷୀରେ ଗଜପତି ପ୍ରତାପରୁଦ୍ର ଦେବଙ୍କ ସଂପର୍କୀୟ ଅନୁମାନ ଭିତ୍ତିକ ଇତିହାସର ପୁନଃ ସମୀକ୍ଷା ଆବଶ୍ୟକ । ଏପରି ଆଲୋଚନା ଫଳରେ ଐତିହାସିକ ଭ୍ରାନ୍ତି ଦୂର କରି ସତ୍ୟ ପ୍ରତିପାଦିତ କରିବା ସମ୍ଭବ ହେବ ।

**ପାଦଟୀକା**

୧) ସରସ୍ୱତୀ ବିଳାସ—ପୃଷ୍ଠ ୧୦
୨) Orissa in South India—G. Ramdas O.H..R.J Vol.I, 1952, P-214
୩) J. S. B. No. 2-1900
୪) Orissa in South India—OHRJ Vol.I - P. 214
୫) N. D. I. —C. P. No. 21, 22.
୬) N. D. I. —Vol. I. C. P. No. 21.
୭) Epigraphica India —Vol XIII P.
୮) ଭାରତୀ ଜୁଲାଇ—୧୯୩୬
୯) Epigraphica Carnatica—Vol. XI—P.—127
୧୦) Epigraphica Carnatica—Vol. XII— P.—62
୧୧) T. T. I. No.—347
୧୨) Epigraphica Carnatica—Vol. XI—D. G. II
୧୩) M. E. R.—1917—No.—744
୧୪) ଭକ୍ତି ଭାଗବତ ମହାକାବ୍ୟ —ସର୍ଗ ଶ୍ଳୋକ ୨୪, ୨୬, ୨୦, ୩୯, ୩୨
୧୫) E. I. Vol. XIII P.—157
୧୬) OHRJ—Vol. I—No. 3 P.—231
୧୭) N. D. I.—No.—185
୧୮) N. D. I. Udayagiri—40
୧୯) Travanchore Archives Report—I P.—54
୨୦) T. T. Vol.—II

—ଶ୍ରୀମତୀ ଗୀତା ହୋତା

# ଅପୂଜା ଫୁଲ

ଭାଉଜ, ଏ ଭାଉଜ ମଁ ? ମଲ୍ଲ ଏତିକି ରାଗେଇ ଭାଉଜଟାଏ ? ଏଇଠି ବସିଛି, ହୁଁ କି ହାଁ କରୁନା ?

ପଛପଟରୁ ଦୌଡ଼ିଆସି ପ୍ରମିଳାର ବାହୁ ଦିଇଟା ହଲେଇ ଦେଲା ଷୋଡ଼ଶୀ ନଣନ୍ଦ ଚପଳା ।

ବାତାୟନର ମୁକ୍ତପଥ ଦେଇ ଚାହିଁ ରହିଥିଲା ପ୍ରମିଳା—ସୀମାହୀନ ଶୂନ୍ୟରେ ଦୃଷ୍ଟିତାର ଲମ୍ବି ଯାଇଥିଲା ଦୂରରୁ ବହୁ ଦୂରକୁ ।

ହେ ଭାଉଜ ? ଗୋଟେ ଗୀତ ଶୁଣିବ ? ଏହି ବର୍ତ୍ତମାନ ରେକର୍ଡ଼ରେ ବାଜୁଥିଲା, ଶୁଣିଆସିଲି, ଶୁଣ, ମେଁ ତୁମସେ ପ୍ୟାର କିଆ, ମେରେ ଛୋଟିସେ ଜିଆ............ ମେଁ............

ଆରେ ଏ କ'ଣ ମଁ ତମେ ଜମା ଶୁଣୁନା ? ପ୍ରମିଳାର କାନ ପାଖରେ ମୁହଁ ଲଗାଇ ବଡ଼ ପାଟିରେ ଡାକି ଉଠିଲା, ନୂଆବୋଉ........ ଉ......... ।

ଚପଳାର ଡାକରେ ଦୋହଲି ଉଠିଲା ପ୍ରମିଳା, ଗାଢ଼ ନିଦରେ ବିଭୋର ହୋଇ ସ୍ୱପ୍ନ ଦେଖି ଶିହରି ଉଠନ୍ତି, ସେମିତି ଟିକିଏ ଶିହରି ଉଠିଲା ତାର ନିଶ୍ଚଳ ଦେହଟା ପୁଣି ସ୍ଥିର ହୋଇଗଲା ଅଳ୍ପ କ୍ଷଣରେ ।

ବେଶ କିଛି ସମୟ ପରେ ଖିଲି ଖିଲି ହୋଇ ହସି ଉଠିଲା ଚପଳା । କହିଲା କେଡ଼େ ବୋକା ମ ତମେ ନୂଆବୋଉ ? ଚପଳାର ହସର ଢେଉରେ ସଂବିତ ଫେରି ପାଇଲା ପ୍ରମିଳା । ବାତାୟନ ପାଖରୁ ଘୁଞ୍ଚି ଆସୁ ଆସୁ କହିଲା କାହିଁକି ? ଚପଳା ତାର ଲଳିତ କର କଙ୍କଣ ହଲେଇ ଉତ୍ତର ଦେଲା— ଏହି ତୁମର ଅଲଣା ଚିନ୍ତାଧାରା— ଉଦାସ ଦିନ ଯାପନ—

ଡାଳିମ୍ବ ପାଚିଲା ହେଲେ ଯେପରି ଧାରଟିଏ ଫାଟିଯାଏ ସେମିତି

ଧାରେ କରୁଣ ହସ ଖେଳିଗଲା ପ୍ରମିଳା ଓଠରେ । ଚପଳାକୁ ଛାତି ଉପରକୁ ଆଉଜାଇ ଆଦର କରି କହିଲା –ସୁନାପିଲା ତମେ ! ତମେ କିପରି ବୁଝିବ ନାରୀ ପ୍ରାଣର ଅକୁହା ବେଦନା ଅସହ୍ୟ ଝଡର ଦାଉ ।

କିଛି କିରି ହସି ଚପଳା କହିଲା .....କ'ଣ ଯେ କହୁଛ "ଝଡ" । ଅଦିନରେ ଝଡ କେଉଁଠୁ ଆସିଲା ଏଇଟା ପରା ଆଷାଢ ମାସ । କିନ୍ତୁ ଆଜିତ ଆକାଶ ବେଶ ନିର୍ମଳ ନୂଆବୋଉ । ଝଡ କେଉଁଠି ଦେଖିଲ ? କହୁ କହୁ ପୁଣି ହସିବାକୁ ଲାଗିଲା ଚପଳା ।

ଚପଳାକୁ ବାହୁ ଭିତରେ ଜାବୁଡି ଧରି କହିଲା ପ୍ରମିଳା,

ଝଡ ପ୍ରକୃତିର ନୁହେଁ, ଝଡ ପ୍ରାଣର । ଝଡ ହୃଦୟର, ନୂଆ ବୋଉ କୋଳ ଭିତରେ ମୁହଁ ଗୁଞ୍ଜି ଗେହ୍ଲେଇ ହେଉଥିଲା ଚପଳା । ତାର ଛାତିର ବ୍ଲାଉଜ ତଳେ ସୁବୀରର ଫଟୋ ଖଣ୍ଡିକ ଫୋଡି ହେଉଥିଲା ଥରକୁ ଥର ।

—ଚପଳାର ମୁଣ୍ଡବାଳ ସାଉଁଳୁ ସାଉଁଳୁ, ଡାକିଲା, ପ୍ରମିଳା—

—ଉଁ ।

—ମନ ମାନିଲା ?

—ଯାବ—ଦୌଡି ପଳାଇଲା ଚପଳା ।

ନଣନ୍ଦର ଯିବା ବାଟକୁ ଚାହିଁ ରହିଲା ପ୍ରମିଳା । ପୁଣି ସେହି ଶୂନ୍ୟ, ମହାଶୂନ୍ୟ ଆଚ୍ଛାଦିତ କରି ପକାଇଲା ତାର ଚତୁର୍ପାଶ୍ୱରେ । ଚପଳାର ଚପଳ ମଧୁର ଗୁଞ୍ଜନ ସ୍ପର୍ଶ କରି ପାରିଲା ନାହିଁ ପ୍ରମିଳାର ଅନ୍ତଃଦେଶକୁ । ଖଟ୍ କରି ଶବ୍ଦଟାଏ ହେବାର ଆଖି ଫେରାଇଲା ପ୍ରମିଳା । ଚାକର ଚା'ର ଟ୍ରେଟା ଟେବୁଲରେ ଥୋଇ ଦେଇ ଗଲା । ସେପଟରୁ– ପ୍ରେମ, ଚା, ଦିଅ କହି ପଶିଆସିଲେ ନିଶୀଥ ।

ନିରଳସ ଅନ୍ତରର ସ୍ଥାନ ଭଳରେଉଠି ଆସିଲା ପ୍ରମିଳା ଚା'କରିବାକୁ । କପ୍‌ରେ ଚା' ଢାଳି ଚିନି ମିଶାଇବାକୁ ଲାଗିଲା । କେବଳ ସେହି କଣ୍ଟାର ଟନ୍ ଟନ୍ ଶବ୍ଦ ବ୍ୟତୀତ ଆଉ କୌଣସି ଶବ୍ଦ ସ୍ୱରର ଝଙ୍କାର ନଥିଲା– ଭିତରେ ବା ବାହାରେ ।

ଦଶ କି ପନ୍ଦର ମିନିଟ, ଚା'ପାନ ଶେଷ କରି ନିଶୀଥ ଚାଲିଗଲେ ।

ଏକାକୀ ନିର୍ଜନତାକୁ କୋଳରେ କାଖେଇ ଧରି ବସି ରହିଲା ପ୍ରମିଳା । ସେହି ଦୂର ପାହାଡ଼ ତଳେ ସୂର୍ଯ୍ୟଙ୍କର ଅସ୍ତରାଗର ଶେଷରଶ୍ମି ଲିଭିଯାଇ ନଇଁ ଆସିଲା ନିଥର ସଂଧ୍ୟାର ଅନ୍ଧକାର । ସେଇଟି ନିଜର ଚା' କପ୍‌ଟିକୁ ହାତରେ ଧରି ବସି ରହିଛି ପ୍ରମିଳା, ସ୍ୱାମୀଙ୍କର ଆସିବା ବାଟକୁ ଚାହିଁ ।

ନୂଆବୋଉ । ଡାକି ଡାକି ଆସିଲା ପୁଣି ଚପଳା । ଆରେ ତୁମ ଚା'ତ ପୁରା ଥଣ୍ଡା ହୋଇ ଗଲାଣି । ପ୍ରମିଳା ହାତରୁ କପ୍‌ଟି ନବାକୁ ଯାଇ କହିଲା—ରୁହ, ଆଉ ଥରେ କରି ଆଣୁଛି । ପ୍ରମିଳା ନାହିଁ କରି କହିଲା ଥଣ୍ଡା – ପିଇବି ।

ଛି—ଛି ଏଗୁଡ଼ା କେହି ପିଅନ୍ତି । ଏକବାର ଥଣ୍ଡା ଯେ ? ପ୍ରମିଳା ଧୀର ସ୍ୱରରେ କହିଲା—ଭିତର ଜୁହୁଳୁଛି ଚୁନା, ଯେଥିରେ ଏତେ ଉତ୍ତାପ ସହିବ ନାହିଁ । ଦିଅ—ସେହି ଥଣ୍ଡା ଚା' ପିଇଦିଏ ।

ଛି, ଛି, କି ପାଗଳ ମ ତୁମେ ? ଚା'ତକ ମାଟି ଉପରେ ଢାଳି ଦେଲା ଚପଳା ।

ପ୍ରମିଳା ଅଳ୍ପ ହସି—ଫିଙ୍ଗି ଦେଲୁ ଯେ ?

ବେଶ କଲି, ନିଅ ଗରମ ଚା'ର କପଟା ପ୍ରମିଳା ହାତରେ ଧରାଇ ଦେଇ, ନିଜର କପଠେ ଚୁମୁକ ଦେଲା ଚପଳା ।

ଆୟା ଆସି କହିଗଲା—ମା, ସେହି ଭଦ୍ର ବ୍ୟକ୍ତିମାନେ ଆସିଛନ୍ତି ।

ପ୍ରମିଳା ଶୁଣି ନଶୁଣିଲା ପରି ବସି ରହି କହିଲା—ଅଯନ୍ତୁ ।

ଘୁଉଡ଼କୁ ହଲାଇ ଚପଳା କହିଲା—ହେଇ ସେମାନେ ଆସିଲେଣି ।

—ନୀରବରେ ନମସ୍କାରଟିଏ କରିବାକୁ ବାଧ୍ୟ ହେଲା ପ୍ରମିଳା ।

କାନରେ ଫୁସ ଫୁସ କରି କହିଲା ଚପଳା—ନୂଆ ବୋଉମ—ଏମିତି ଉଦାସ—ନିରସ କାହିଁକି ?

ବୋକାଙ୍କପରି ଟିକିଏ ଚାହିଁଲା ପ୍ରମିଳା ଚପଳାର ମୁହଁକୁ—, କଣ ଦେଖିଲା, ଚପଳା ଘୁଉଡ଼ର ଢଙ୍ଗରେ, ମୁହଁରେ ? ସେ ଘୁଉଡ଼ର ଦୃଷ୍ଟିକୁ ସହି ପାରିଲା ନାହିଁ, ତଳକୁ ମୁଣ୍ଡପୋତି ପରଦାର ଅନ୍ତରାଳରେ ଅପସରି ଗଲା ।

ସତେତ, ଇମେତି ନିଷ୍ଠୁର କାହିଁକି ? ପ୍ରମିଳା କଅଣ ଦେଖି ପାରୁନାହିଁ କୁଷିଆ ଆସିଛନ୍ତି, ଚପଳାର ଖୁବି ଶ୍ୱଶୁର ଓ ଅନ୍ୟାନ୍ୟ ଭଦ୍ର ବ୍ୟକ୍ତିମାନେ, ଚପଳାର ନିର୍ବନ୍ଧ ପାଇଁ । ପ୍ରମିଳା ? କ'ଣ ହୋଇଛି ତାର ? ତାର ସାର ଦେହ ଏପରି ଥରୁଛି କାହିଁକି ? ଥରିଲା କଣ୍ଠରେ କହିଲା—ବସନ୍ତ । ଭଦ୍ର ବ୍ୟକ୍ତିଙ୍କୁ ଏତକ କହିଦେଇ ଭିତରକୁ ପଳାଇ ଆସିଲା ନିଜର ଶୋଇବା ଘରକୁ । ତାର ଫେନିଳ ଶେଯ ଉପରେ ଲୋଟି ପଡ଼ିଲା କ୍ଷଣି ତାର ହୃଦୟ ଭିତରେ ଜମାଟ ବାନ୍ଧିଥିବା କୋହ ପ୍ରବଳ ବନ୍ୟା ପରି ଫୁଲି ଫୁଲି ଉଠିଲା ।

ଆୟାର ଡ଼ାକରେ ବିଛଣାରୁ ଉଠି ବସିଲା ପ୍ରମିଳା—କାନ୍ଦ କାନ୍ଦ କଣ୍ଠରେ କହିଲା— କଅଣ କହୁଛୁ ତୁ ?

ମା ! ମୋତେ କ'ଣ କରିବାକୁ କହୁଛୁ କହିଲୁ ?

ଆୟା ପ୍ରମିଳା ଆଖିରୁ ଲୁହ ପୋଛି ଦେଇ କହିଲା—ଛି, ଛି, ଏ କ'ଣ କରୁଛୁ—ପ୍ରେମ ? କ'ଣ କରୁଛୁ କହିଲୁ ? ନଣନ୍ଦ ପିଲାଟି ଜାଣିଲେ କଅଣ ଭାବିବ ? ତାର ଏତେ ବଡ଼ ଶୁଭ ଦିନଟାରେ ତୁ କାନ୍ଦୁଛୁ ? ଲୋକେ କ'ଣ କହିବେ ?

ପ୍ରମିଳା କହିଲା— ମୁଁ ପାରିବିନି, ମୁଁ ଆଉ ପାରିବିନି ମା, ମୋତେ ତୁ ଆଉ ଅଭିନୟ କରିବାକୁ କହନା—ଆୟା ମା । ଆୟା ପ୍ରମିଳାର ଦିହ ମୁଣ୍ଡ ଆଉଁସିବାକୁ ଲାଗିଲା ।

ନିଜର ଆଖିରୁ ଲୁହ ପୋଛି କହିଲା—ଆଲୋ ପ୍ରେମ, ତୋର ମା ଗଲା, ବାପ ଗଲା ଶାଶୁ ଶ୍ୱଶୁର ସମସ୍ତେ ଗୋଟି ଗୋଟି ବାଟ କାଟଲେ, ହେଲେ ମୋତେ ଯମ ନେଲା ନାଇଁଲୋ ? ତୋର ଆଖିରୁ ଲୁହ ପୋଛିବାକୁ ରଖିଗଲେ ମତେ ?

ଆ'ମା, ଅବୁଝା ହୁଅନା, ତୁ ଝିଅ ପିଲା ପର, ଝିଅମାନେ କାହା ଆଦର ସୁହାଗକୁ ଅପେକ୍ଷା କରନ୍ତି ନାହିଁ, ଉଠ୍, ହାତଧରି ଆୟା ମା ପ୍ରମିଳାକୁ ଛିଡ଼ା କରଇ ଦେଲା ।

ସେ କଅଣ ବୁଝୁନି ? ବେଶ୍ ବୁଝୁଛି ତାର ପ୍ରେମର ବେଦନା । ଏବେ ବୁଢ଼ା ହେଲାଣି, ଭଲ ଦୃଶ୍ୟ ହେଉନି ଆଖିକୁ, ତଥାପି ପ୍ରେମକୁ ଛାଡ଼ି ଯାଇ ପାରୁନି । ପ୍ରମିଳା ପୁଅଣି ହୋଇ ଆସିଲା ବେଳେ ସାଙ୍ଗରେ ଆସିଥିଲା ।

ପ୍ରମିଳାର ସୁଖର ନୀଡ଼ରେ ଛାଡ଼ି ଦେଇ ଫେରି ଯାଇଥାଆନ୍ତା ନିଜର ଗାଁକୁ ! କିନ୍ତୁ ସୁଖର ନୀଡ ଆଉ ମିଳିଲା ନାହିଁ । ପ୍ରମିଳାର ଭାଗ୍ୟରେ ତା' ଜୀବନର ପହିଲି ଦିନରେ ଘଟିଗଲା ବିରାଟ ବିପର୍ଯ୍ୟୟ । ଆଉ ଛାଡ଼ି ଯିବାର ଉପାୟ ରହିଲା ନାହିଁ ।

ସ୍ୱାମୀ ଉପେକ୍ଷିତା ତରୁଣୀଟିକୁ ଛାଡ଼ିଦେଇ ଜାକି ଧରି ପଡ଼ି ରହିଲା,ଘର କୋଣରେ । ସେ ପ୍ରାୟ ପନ୍ଦର ବର୍ଷ ତଳର କଥା— । ଏହି ଦୀର୍ଘ ପନ୍ଦର ବର୍ଷ ଧରି ଶୁଣି ଆସୁଛି ଆୟାମା ପ୍ରମିଳାର ବିଫଳ ଜୀବନର ବ୍ୟାକୁଳ ବିଳାପ— କରୁଣ କ୍ରନ୍ଦନର ଧ୍ୱନି— ଅଡୁରି କରୁଣ ହୋଇଛି କିନ୍ତୁ ଉପାୟ ଖୋଜି ପାଇନି ।

ବାହାରେ ନିଶାଥର କଥା ଶୁଭିଲା—ଆୟା ପ୍ରମିଳାର ହାତ ଧରି ତାହାରକୁ ନେଇ ଆସିଲା' କହିଲା—ଚପଳା ତୋରି ଝିଅ ପରି ଗୁଲ ମା— ସେ ତୋହରି ହାତକୁ ଅନେଇ ବସିଛି । ତୋହରି କରୁଣା ବ୍ୟତୀତ ତାରି ଆଉ କିଏ ଅଛି ?

ନିଜକୁ ଫେରି ପାଇଲା ପ୍ରମିଳା, ପ୍ରକୃତିସ୍ଥ ହୋଇ ଭାବିଲା, ସତେ ତ କିଏ ଆଉ ଦେଖିବ ଚପଳାକୁ ? ବାପା ମା ହେଉଣ୍ଡ ଏଇ ଝିଅଟି । ତା ପ୍ରତି ଅବହେଳା କାହିଁକି କରିବ ପ୍ରମିଳା ? ଆଖିରୁ ବୋହି ଆସୁଥିବା କେଇଟୋପା ଲୁହକୁ ପଣତ କାନିରେ ପୋଛି ଦେଲା ପ୍ରମିଳା ।

ଭିତର ଘରୁ ଧାଇଁ ଆସିଲା ଚପଳା—ନୂଆ ବୋଉ, ନନାପର ଡାକୁ- ଛନ୍ତି.......... ? ପାଖକୁ ଆସି— ତମେ କାନ୍ଦୁଛ ? ହଜାରେ ପ୍ରଶ୍ନ ତାର ଟିକି ମନକୁ ଆକ୍ରାନ୍ତ କରି ପକାଇଲା । କିନ୍ତୁ କାହିଁକି ? କାହିଁକି ସବୁବେଳେ ଏତେ କାନ୍ଦନ୍ତି ଭଉଜ ? ସେ କିଛି ବୁଝି ନପାରି ବଡ ବଡ଼ ଆଖିରେ ଗୃହିଁ ରହିଲା ପ୍ରମିଳାର ଅଶ୍ରୁଳ ଆଖି ଦୁଇଟିକୁ ।

ଅଜଣା ପୁଲକରେ ନାଚି ଉଠୁଥିଲା ଚପଳାର ମନ । ନୂତନ ମହ- କରେ ମହକି ଉଠୁଥିଲା ତରୁଣୀ ହୃଦୟ ତ ର । ଚଳଚଂଚଳ ଚରଣରେ ନାଚି ଉଠୁଥିଲା ନୂତନ ଛନ୍ଦ । ସେ ଯୌବନର ପରିପୂର୍ଣ୍ଣ ସୌରଭରେ ହୋଇ ଉଠୁ- ଥିଲା ମତୁଆଲା । ତାକୁ ଏକୁଟିଆ ସନ୍ଧ୍ୟାକି ନପାରି ଧାଇଁ ଆସିଥିଲା ନୂଆବଉ ପାଖକୁ—ଶୁଣି ଥାଆନ୍ତା ଟିକିଏ ପରିହାସ—ଥଟ୍ଟା, ଟିକିଏ ମିଠା ମିଠା ଆଦର..........କିନ୍ତୁ ? ? ? ତା ବଦଳରେ ତାଙ୍କର ଆଖିରେ ଲୁହ ? ଥକା

ହୋଇ ଛିଡା ହୋଇଗଲା ଚପଳା । ନାଁ । ସେ ଆଜି ମାନି ନେଇ ପାରୁନି ଏହି ଲୁହ— ଏହି ଅନ୍ତରର ବେଦନା ।

ନିଜର ସବୁ ଆନନ୍ଦ ଭୁଲିଯାଇ ଦୁଃଖରେ ହୃଦୟ ଫାଟିଯିବା ପରି ଅନୁଭବ କଲା ଚପଳା । ସେ ଅନ୍ୟ ଉପାୟ ନ ପାଇ ପ୍ରମିଳାକୁ ଜାବୁଡ଼ି ଧରି, ବଡ ଧାଟିରେ କାନ୍ଦି ଉଠିଲା ।

ଦୁଇଟି ଶୋକାକୁଳ ତରୁଣୀ ଦୁହିଁଙ୍କର ଆଖି ଲୁହରେ ଦିହେଁ ଦୁହିଁଙ୍କୁ ତିନ୍ତାଇ ପକାଇଲେ ।

ବାଷ୍ପରୁଦ୍ଧ କଣ୍ଠରେ କହିଲା ଚପଳା— ତମ ଆଖିରେ ଏତେ ଲୁହ କାହିଁକି । ତୁମେ ଏତେ କାନ୍ଦ କାହିଁକି ନୂଆବୋଉ ।

ପ୍ରିୟ ନଣନ୍ଦଟିକୁ ନିଜର ଛାତି ଉପରକୁ ଆଉଜାଇ ଆଣି ପ୍ରମିଳା କହିଲା, ତୁମେ ବୁଝିବନି, ଚପଳା—ପିଲା ତୁମେ, ବୁଝି ପାରିବନି ମୋ ଆଖି ଲୁହର କାରଣ, ନାଁ । ତୁମର ବୁଝିବାର ଦରକାର ନାହିଁ । ଭଗବାନ କରନ୍ତୁ କେବେ ହେଲେ କୌଣସି ନାରୀକୁ ବୁଝିବାକୁ ନପଡ଼ୁ ମୋ ମନ କଥା ।

ଚପଳା ଭାଉଜ ଛାତିରୁ ମୁଣ୍ଡ ଉଠାଇ କହିଲା, ନାଇଁ ଭାଉଜ, ମୁଁ ଆଜି ଛାଡ଼ିବି ନାହିଁ— ତୁମେ କୁହ, କୁହ ତୁମର କାନ୍ଦିବାର କାରଣ ? କୁହ ଭାଉଜ—ତମ ଦିହ ଛୁଉଁଛି—କୁହ ତୁମ ଆଖିରେ ଏତେ ଲୁହ କାହିଁକି ?

ନୀରବରେ ପ୍ରମିଳା ତାର ଦୁର୍ବଳ ଆଙ୍ଗୁଳି ଗୁଡ଼ିକ ଭିତରେ ଗୁନ୍ଥାଇ ଗୁନ୍ଥାଇ ଚପଳାର ବାଳ ଗୁଡ଼ିକୁ ଅଡ଼ୁଆ କରିବାକୁ ଲାଗିଲା ।

ଚପଳା ଜିଦ୍‌ଧରି ବସିଲା—ମିନତି କଲା ପରି କହିଲା, କୁହ ମୋ ରାଣ, ମୋ ମୁଣ୍ଡ ଖାଇବ । କୁହ ଭାଉଜ, ନହେଲେ ଆଜି ତୁମକୁ ମୁଁ ଛାଡ଼ିବିନି ।

ଚପଳାକୁ ଛାଡି ଦେଇ ଛିଡା ହୋଇ ପଡ଼ିଲା ପ୍ରମିଳା । ସେ ଚମକିଲା ପରି କହିଲା, ନାଁ । ନାଁ ତୁମେ ସେ କଥା ପଚାରନା—ମୁଁ କହି ପାରିବିନି । ମୁଁ ନିରୁପାୟ ।

—ମୁଁ ଆଉ ତୁମ ଆଖିର ଲୁହ ସହିପାରୁନି ନୂଆବୋଉ—ତମ ଗୋଡ ଧରୁଛି—କୁହ ?

କିନ୍ତୁ, ସୁନା—ମୋ ଆଗରେ ଯେ ଛିଡ଼ା ହୋଇଛି ବିଶାଳ ପାଚେରୀ । ତାକୁ ଲଂଘନ କରିବାର ଉପାୟ ନାହିଁ । କିପରି ଶୁଣାଇବି ତୁମକୁ ମୋ ଜୀବନର ବିଫଳତାର କରୁଣ କାହାଣୀ ? ନାଇଁ ଚପଳା ତୁମକୁ କହି ପାରିବିନି । ମୋ ପାଟିକୁ ବଂଦ କରି ରଖିଛି ସତ୍ୟର ହିମାଳୟ । କିପରି ଲଂଘିବି ଏହି ସତ୍ୟର ସୀମାକୁ ? ଅସମ୍ଭବ ! ନାଁ, ତା ମୁଁ କରିପାରିବିନି ସୁନା, ତମେ ମତେ ବାଧ୍ୟ କରନାହିଁ ।

ଦୀର୍ଘ ପନ୍ଦର ବର୍ଷ ବିତି ଯାଇଛି । ଘୃଣାକ୍ଷରେ ମଧ୍ୟ କାହାକୁ ଜାଣିବାକୁ ଦେଇନି, ଆଜି ଏତେ ଦୁର୍ବଳ ହୋଇ ପଡ଼ୁଛି କାହିଁକି ପ୍ରମିଳା ? ଏତେ ଦିନର ଯତ୍ନର ଲୁଚ୍ଇଥିବା ପୁଟୁଳାଟି ଫିଟାଇ ବସିବ କି ? ସବୁ ସଣ ନିୟମ ଭାଙ୍ଗି ପକାଇବି ଏହି ଛୋଟ ଝିଅଟି ପାଖରେ ? ତାପରେ ଆଉ କ'ଣ ରହିବ ତାର ନିଜର ବୈଶିଷ୍ଟ୍ୟ ହୋଇ ? ବିଗତ ଦିନର ଘଟଣା ଗୁଡ଼ିକ ମନରେ ରଖିଛି ପ୍ରମିଳା—ଗୋଟି ଗୋଟି କରି ପ୍ରଥମ ଦିନର ସ୍ମୃତିର ପାଖୁଡ଼ା ଗୁଡ଼ିକୁ ସାଇତି ରଖିଛି, ହୃଦୟର ନିଭୃତ କୋଣରେ ।

ସେହି ଯେଉଁ ଦିନ ପ୍ରଥମ ହୋଇ ବଧୂରୂପେ ଏହି ଘରକୁ ଆସିଲା ପ୍ରମିଳା—ଏହି ଚପଳାର ବୟସ—କେତେ ହୋଇଥିବ ? ବର୍ଷେ ବା ଦୁଇ ବର୍ଷର ଶିଶୁଟିଏ । ପ୍ରଥମ ଦିନର ମଧୁରାତ୍ରୀ ଶେଷ ରାତ୍ରୀରେ ପରିଣତ ହେଲା, ସେ କଥା କଣ କୌଣସି ନାରୀ ଆଉ ଗୋଟିଏ ନାରୀକୁ କହିପାରିବ ?

ତା'ର ପହିଲି ରତିର କାହାଣୀ — ସୁସଜ୍ଜିତା ହୋଇ ନବବଧୂ ବେଶରେ ପଲଙ୍କ ଉପରେ ଅପେକ୍ଷା କରି ସେ ବସିଥିଲା । ସେ ଆସିଲେ, ବଣେଇ ରହିଁଲା, ପ୍ରମିଳା—ନିଜକୁ ଅଜାଡ଼ି ଦବାର—ସମର୍ପି ଦବାର ଦୁର୍ବାର କାମନା ନେଇ ବ୍ୟାକୁଳ ହଉଥିଲା ଅନ୍ତର ଭିତରେ ।

ଅଳ୍ପ ଦୂରରେ ଥିବା ପ୍ରଦୀପର ସ୍ୱଳ୍ପ ଆଲୋକରେ ଝଲସି ଉଠୁଥିଲା ପ୍ରମିଳାର ଅଙ୍ଗର ଅଳଙ୍କାର ମାନ, ମହକି ଉଠୁଥିଲା ଚମ୍ପା ମଲ୍ଲିକାର ମଧୁର ସୌରଭ ।

ଅଳ୍ପଦୂରରେ ଛିଡ଼ା ହୋଇଥିଲେ ନିଶୀଥ । ପ୍ରମିଳାର ଆକାଂକ୍ଷିତ ପୁରୁଷ । ଅର୍ଘ୍ୟଧରି ରହିଁ ରହିଥିଲା ସେହି ଶୁଭ ଲଗ୍ନଟିକୁ କେତେବେଳେ ସେ ଆସିବେ ପାଖକୁ । ତାକୁ ଗ୍ରହଣ କରିବେ । ଅଂଜୁଳା ଭରା ଅର୍ଘ୍ୟଡ଼ାଳି ଦବ ନିଶୀଥର ପାଦତଳେ । କିନ୍ତୁ ! ପ୍ରହର ବିତି ଯିବାକୁ ଲାଗିଲା ଶୁଭଲଗ୍ନର

ବେଳା ଗଡ଼ି ଯିବାକୁ ଲାଗିଲା ନିଶୀଥ ଆସିଲେନାହିଁ । ଗ୍ରହଣ କଲେନାହିଁ ପ୍ରମିଳାର ଅର୍ଘ୍ୟ, ମଧୁଯାମିନୀ ଶେଷ ହୋଇ ପରିଷ୍କାର ଦିଶିଲା । ଆକାଶ ଗଙ୍ଗର ତମାମାଳ ଝରି ପଡ଼ିଲା ମାଟି ଉପରେ । ମୁଣ୍ଡର ଓଢଣୀ, ଅଙ୍ଗର ବସନ ଲୋଟି ପଡ଼ିଲା ତଳେ । ବିସ୍ମୃତି ପ୍ରମିଳା—ଠାକୁରର ଅପୂଜା ଫୁଲଟିଏ ପରି ପଡ଼ି ରହିଲା ବିଛଣା ଉପରେ ।

ଅଳସ ପାଦରେ ଉଠି ଆସିଲା ପ୍ରମିଳା ।

—ଶୁଣ ? ହଠାତ୍ ନିଶୀଥ ଡାକିଲେ ।

ନିଶୀଥର ଡାକ ଶୁଣି ଅଟକିଗଲା—ମନରେ ଆଶାର ପ୍ରଦୀପ ପୁଣି ଜଳି ଉଠିଲା ପ୍ରମିଳାର ହୃଦୟ ଭିତରେ । ଅପୂର୍ବ ଶିହରଣରେ ସେ କହିଲେ—ତୁମକୁ ଆଜିର କଥାପାଇଁ ଶପଥ କରିବାକୁ ପଡ଼ିବ ।

ପୁଣି ବିନା ଭୂମିକାରେ ପାଖକୁ ଚାଲିଆସି କହିଲେ, ଏକଥା କାହାରିକୁ କହିବ ନାହିଁ ।

ନୀରବରେ ସମ୍ମତି ଜଣାଇ କୋଠରୀରୁ ବାହାରି ଆସିଲା ପ୍ରମିଳା ।

ଏହି ଦୀର୍ଘଦିନ ଧରି ନିଶୀଥର ଅର୍ଦ୍ଧାଙ୍ଗିନୀ ଭାବରେ ଯେଉଁ ଅଭିନୟ କରି ଆସିଛି, ସେକଥା କିପରି କହିବ ଚପଳାକୁ ? ଚପଳା—ପିଲା ବୁଝି ପାଇନି, କ'ଣ ବୁଝିବ ସେ ?

ବାହାରେ ଶୁଭଶଙ୍ଖ ବାଜି ଉଠିଲା । ବିବାହର କୋଳାହଳ ଭିତରେ ଅଭିନୟ କରି ଚାଲିଲା ପ୍ରମିଳା, ତାର ଆଉ କିଛି ମନେ ନାହିଁ । ବିବାହ ବେଦୀରେ ନିଶୀଥର ବାମପାଖରେ ବସି କନ୍ୟାଦାନ କଲା, ସୁବୀରର ହାତରେ ଚପଳାକୁ ସମର୍ପଣ କରି ଶୂନ୍ୟ ହୃଦୟକୁ ମହାଶୂନ୍ୟତାର ସମୁଦ୍ରରେ ଭସାଇ ଦେଇ ଘର ଭିତରକୁ ଚାଲି ଅସୁଥିଲା ପ୍ରମିଳା । ହଠାତ ଦ୍ୱାର ବନ୍ଧରେ ଗୋଡ଼ ବାଜି ଝୁଣ୍ଟି ପଡ଼ିଲା ତଳେ । ଚପଳା ସୁବୀରର ହାତଧରି ଆଗେଇ ଗଲା ନୂତନ ପଥରେ । ଏକାକିନୀ ପ୍ରମିଳା ପଡ଼ିରହିଲା—ନିଃସଙ୍ଗ ଘରଟା ଭିତରେ ।

ତିନିଦିନ ଶୋଇରହିବା ପରେ ଆଜି ଟିକିଏ ସୁସ୍ଥ ଲାଗୁଛି ପ୍ରମିଳାକୁ । ସେ ପାନିଆଁଟା ନେଇ ଡ୍ରେସିଂ ଟେବୁଲ ପାଖରେ ଯାଇ ବସିଲା ।

ଦର୍ପଣରେ ପ୍ରମିଳା ନିଜକୁ ଦେଖିବାକୁ ଲାଗିଲା । ସତେ ଅଜି କେତେ ମନୋରମ ଦିଶୁଛି ତାକୁ ? ଗାଲି ଚିବୁକରୁ ମଧୁ ଝରି ପଡ଼ିଲା ପରି ଚିକିମିକି କରୁଛି ଚିବୁକ ଦୁଇଟି—ବିବାହ ପାଇଁ ଗୁଡ଼ାଏ ଅଳଙ୍କାର ପିନ୍ଧାଇ ଦେଇଥିଲା ଆୟା'ମା—ଖୋଲା ହୋଇନି ଏଯାଏ । ପୁରୁଣା ହେଲେ ମଧ୍ୟ କେତେ ମାନୁଛି ତାର ଚମ୍ପା ବରଣ ଅଙ୍ଗକୁ । କିନ୍ତୁ, କାହାପାଇଁ ? କଣପାଇଁ ଏହି ବେଶ ? ଦର୍ପଣରୁ ଆଖି ଫେରାଇ ନେଲା, ମୁଣ୍ଡବନ୍ଧା ହେଲା ନାହିଁ, ପୁଣି ଆସି ବିଛଣାରେ ଲୋଟି ପଡ଼ିଲା ।

ପରଦା ଉଠାଇ ପଶି ଆସିଲେ ନିଶୀଥ—ବହୁଦିନ ପରେ ସେ ଏ କୋଠରୀକୁ ପୁଣି ଆସିଲେ....

ବିଶ୍ୱାସ କରିପାରୁନି ଆଖିକୁ ପ୍ରମିଳା । ସେ ଆଖିଖୋଲି ପୁଣି ଦେଖିଲା —ହଁ, ସେ ଛିଡ଼ା ହୋଇଛନ୍ତି । ପ୍ରମିଳାର ପାଖକୁ ଧୀରେ ଧୀରେ ଆଗେଇ ଆସୁଛନ୍ତି ନିଶୀଥ । ତାର ସ୍ୱାମୀ—ସତେକି ତାର ଜୀବନ ପରିପୂର୍ଣ୍ଣ କରି କୋଳକୁ ଉଠାଇ ନେବେ ନିଶୀଥ ? ପଛଦିନର କଥା ଗୁଡ଼ା ଦୁଃସ୍ୱପ୍ନ ପରି ହଜିଯିବ ପ୍ରମିଳାର ମନରୁ । ପ୍ରମିଳା ଆନନ୍ଦରେ ଅଧୀର ହୋଇ ଉଠି ବସିବାକୁ ଯାଉଥିଲା—

ପୁଣି ସେଇ ଗୁରୁଗମ୍ଭୀର ସ୍ୱର ଭାସି ଆସିଲା, ନିଶୀଥଙ୍କ କଣ୍ଠରୁ— ନଁ, ନାଁ ଉଠନାହିଁ । ତୁମର ଦେହର ଅସୁସ୍ଥତା ଶୁଣି ଆସିଥିଲି—ବର୍ତ୍ତମାନ କିମିତି ଅଛ ?

ପ୍ରମିଳାର ଇଛା ହେଉଥିଲା କହିବାକୁ ଅନେକ କଥା । ସେ କହିବାକୁ ଚାହୁଁଥିଲା, ବେଶ ଭଲଅଛି—ମୋର କିଛି ହୋଇନାହିଁ । ଖୁବ୍ ଭଲଅଛି । ତୁମେ ପାଖରେ ଥିଲେ, ତୁମର ପାଦତଳେ ଟିକିଏ ସ୍ଥାନ ପାଇଲେ ମୋର କିଛି ଚିନ୍ତା ନାହିଁ, କିଛି ଭୟ ନାହିଁ ।

କିନ୍ତୁ, ପ୍ରମିଳାର ଏତେ ଗୁଡାଏ କଥା—ତାର ତଣ୍ଟି ମଝିରେ ଅଟକି ଯାଇ କେବଳ ଯନ୍ତ୍ରଣା ଦେଲା ସିନା ପଦିଏ ହେଲେ ସେ କହି ପାରିଲା ନାହିଁ । ସେ ବିଛଣାରୁ ଉଠି ବସିଲା । ନିଶୀଥ ସଙ୍ଗେ ସଙ୍ଗେ ହାତରେ ଧରିନେଲେ ଏବଂ କହିଲେ—

—ଉଠନାହିଁ ଶୋଇପଡ଼ ।

ପାଖକୁ ଲଗିଆସି ରେଶମା ଚାଦରଟି ପ୍ରମିଳାର ଦେହ ଉପରେ ଘୋଡାଇ ଦେଇ ଚାଲିଗଲେ ନିଶୀଥ ।

ଉଦାସିଆ ଆଖିରେ ପ୍ରମିଳା ଚାହିଁ ରହିଲା ନିଶୀଥର ଯିବା ବାଟକୁ ।

ସଂପାଦିକା—ଅମୃତାୟନ
କ୍ୱାଟର ନଂ – ୭ ଆର-୧
ୟୁନିଟ୍ -୧
ଭୁବନେଶ୍ୱର

ଦେବୀ ପ୍ରସାଦ ଦାଶ

# ପର୍ବତାରୋହଣ

ତୁମେ, ମୁଁ ଓ ସେ
ଆମେ ତିନିଜଣ ପର୍ବତାରୋହୀ
ତୁମେ—"ମୁଁ ଜାଣେ ନାହିଁ ଯେ ମୁଁ ଜାଣେ ନାହିଁ" ।
ଏବଂ ମୁଁ—"ମୁଁ ଜାଣେ ଯେ ମୁଁ ଜାଣେ ନାହିଁ" ।
ତେଣୁ ଆମେ ଏଇଠି ରହିଗଲେ ।
ଶିଖର ଉପରକୁ ଉଠି ପାରିଲେନି ।
ଆମ ଦୁହିଁଙ୍କଠୁ ଯେ ଆସିବ
ନୂତନ ଅରୁଣ କିରଣ ନେଇ
ସେ ଆସିବ ଆଗାମୀ ଯୁଗର ସ୍ୱପ୍ନ ପାଇଁ
ସେ ଆସିବ ଆମର ଯୋଗ୍ୟ ଦାୟାଦ ହୋଇ
ସେ ? .... .... .... .... ....
ସେ— "ମୁଁ ଜାଣେ ଯେ ମୁଁ ଜାଣେ" ।
ତେଣୁ ସେ ନିଶ୍ଚୟ ଉଠିବ
ସଂପୂର୍ଣ୍ଣ କରିବ—
ଅସଂପୂର୍ଣ୍ଣ ପର୍ବତାରୋହଣ ।



ଇଣ୍ଡିଆନ ଇନଷ୍ଟିଚ୍ୟୁଟ ଅଫ ହ୍ୟାଣ୍ଡଲୁମ ଟେକ୍‌ନୋଲୋଜି
ଚୌକାଘାଟ, ବାରଣାସୀ

ମନୋରଂଜନ ପ୍ରଧାନ

# ସାଂପ୍ରତିକ ଉର୍ଦ୍ଦୁ ସାହିତ୍ୟ

ଏକଦା ଉତ୍ତର ଭାରତର ସେନାଛାଉଣୀରେ ହିନ୍ଦୀ—ପାରସୀ—ଆରବୀକର ରସାୟନିକ ମିଶ୍ରଣରେ କେମିତି ଗୋଟିଏ ଲୋକଭାଷାର ଜନ୍ମ ହେଲା, ତାପରେ ସେ ଉଠିଆସିଲା ସାହିତ୍ୟର କାରୁକାର୍ଯ୍ୟ ଭରା କଳାନିକେତନକୁ, କ୍ରମେ ତାହା ଯେପରି ଚିତ୍ର ଧ୍ୱନିମୟ ଏକ ଆଶ୍ଚର୍ଯ୍ୟ ରୋମାଣ୍ଟିକ୍ ଆଭା ସୃଷ୍ଟିକଲା, ସେ କାହାଣୀ କମ ରୋମାଣ୍ଟିକ୍ ନୁହେଁ । ଯାହାଫଳରେ ଉର୍ଦ୍ଦୁ ଆଜି ଭାରତର ଅନ୍ୟତମ ପ୍ରଧାନଭାଷା । ପ୍ରଧାନ ଭାଷା ସତ, କିନ୍ତୁ ତାର 'ନିଜର ଘର' ସ୍ୱାଧୀନଭାରତରେ କେଉଁଠି ତାହା ଏପର୍ଯ୍ୟନ୍ତ ସ୍ଥିରନୁହେଁ । ଅବଶ୍ୟ ଉତ୍ତରପ୍ରଦେଶ ଓ ବିହାର ରାଜ୍ୟରେ ଉର୍ଦ୍ଦୁ ଦ୍ୱିତୀୟ ସରକାରୀ ଭାଷା ଭାବେ ସ୍ୱୀକୃତ । କିଂତୁ ଅନ୍ୟାନ୍ୟ ଆଞ୍ଚଳିକ ଭାଷା ଭଳି ଭୌଗଳିକସୀମା ଚିହ୍ନିତ କୌଣସି ମାତୃଭୂମି ତାର ନାହିଁ, ଆଉ ମଧ୍ୟ ନାହିଁ ହିନ୍ଦୀଭଳି ତାର ବ୍ୟାବହାରିକ ସାର୍ବଜନିନତା । ଐତିହାସିକ-ଭୌଗୋଳିକ କାରଣ ଯାହା ହେଉନା କାହିଁକି, ପରିସ୍ଥିତି ଉର୍ଦ୍ଦୁପକ୍ଷରେ ଆଦୌ ଅନୁକୂଳ ହୋଇନି । ନିଜସ୍ୱ ସ୍ଥାନ କାଳ ସୀମା ମଧ୍ୟରେ ଭାଷାର ଚେର ସଂସ୍କୃତିର ମାଟିକୁ ଜାବୁଡ଼ି ଧରିବାର ଯେଉଁ ସୁଯୋଗ ସେଥିରୁ ଉର୍ଦ୍ଦୁ ବଞ୍ଚିତ ହୋଇଛି । ତାର ଅଛି କେବଳ ନିରବଧି-କାଳ ଆଉ ଇତସ୍ତତ ବିଭିନ୍ନ ବିକ୍ଷିପ୍ତ କିଛି ତାଲୁକ୍ ବା ପକେଟ୍ । କିନ୍ତୁ ଉର୍ଦ୍ଦୁ ଭାଷା ସାହିତ୍ୟର ବିକାଶ ବା ଅଗ୍ରଗତିର ଚକା ଏପର୍ଯ୍ୟନ୍ତ ରୋଧ ହୋଇନି । ଅନ୍ୟାନ୍ୟ ଭାରତୀୟ ଭାଷା ସହିତ ବିବର୍ତ୍ତିତ ହୋଇ ସେ ଚାଲିଛି ନିଜର ବୃତ୍ତ ପରିଧିରେ । ଏହାହିଁ ଏକ ବିସ୍ମୟ ।

ଏ କ୍ଷେତ୍ରରେ ଉର୍ଦ୍ଦୁ ପତ୍ର ପତ୍ରିକା ଓ ସଂବାଦପତ୍ରର ଅବଦାନ ଗୁରୁତ୍ୱପୂର୍ଣ୍ଣ । ସାରା ଭାରତରେ ପ୍ରାୟ ଦେଢ଼ଶହ ଭଳି ( ବିଶ୍ୱବିଦ୍ୟାଳୟର ପ୍ରକାଶନା ସହ ) ଉର୍ଦ୍ଦୁ ପତ୍ର ପତ୍ରିକା ପ୍ରକାଶିତ ହୁଏ । ଦୀର୍ଘଜୀବୀ, କ୍ଷୀଣଜୀବୀ ହିସାବରେ ସଂଖ୍ୟା ଗଣନା ଅନୁଯାୟୀ ଏହା ଦ୍ୱିତୀୟସ୍ଥାନର ଅଧିକାରୀ, ସେହି ତୁଳନାରେ ଏହାର ପ୍ରଚାର ସଂଖ୍ୟା ବହୁତ କମ୍ । ଉର୍ଦ୍ଦୁ ଭାଷାଭାଷି ସମାଜରେ ନିରକ୍ଷରତା ଏହାର ମୂଳ କାରଣ । ଶିକ୍ଷିତ ସମାଜରେ ଉର୍ଦ୍ଦୁ ପତ୍ରପତ୍ରିକାର ଚାହିଦା ଖୁବ ସମୃଦ୍ଧ

ନୁହେଁ । ଗତ ଦୁଇ ବର୍ଷରେ ଏମିତି କୌଣସି ସାହିତ୍ୟ ଓ ସଂସ୍କୃତି ବିଷୟକ ପତ୍ରିକା ଆଖିରେ ପଡ଼ିନାହିଁ ଯାହାକୁ ସତରେ Serious ବା ଉଚ୍ଚକୋଟୀର କୁହାଯାଇପାରେ । ଏ ଜାତୀୟ ପୁରୁଣା ଜର୍ଣ୍ଣାଲ ଗୁଡ଼ିକ କୌଣସିମତେ ବଞ୍ଚି ରହିଛି ମାତ୍ର, ତେବେ ଅଂଗସଜ୍ଜାର ଦିଗଟାରୁ ଆରମ୍ଭ କରି ସଂସ୍କାର ଚେଷ୍ଟା କ୍ରମଶ ଲକ୍ଷଣୀୟ ହୋଇଉଠିଛି ।

ଉର୍ଦ୍ଦୁ ବହି ବଜାରର ହାଲଚାଲ ଅବଶ୍ୟ ଏତେଟା ନୈରାଶ୍ୟଜନକ ନୁହେଁ । ଗତ ଦୁଇ ବର୍ଷରେ ଅନ୍ତତଃ ଦୁଇଶହରୁ ଅଧିକ ବହି ପ୍ରକାଶିତ ହୋଇଛି, ତା ମଧ୍ୟରେ ଥିବା କିଛି ରଚନାର ସ୍ୱାଦ ଆଶାପ୍ରଦ । ବିଶେଷ ଭାବରେ ସମାଲୋଚନା ବହି ସବୁ ଆଲୋଡ଼ନ ସୃଷ୍ଟି କରିଛି । ଏହା ମଧ୍ୟରେ ସବୁଠାରୁ ବେଶୀ ଉଲ୍ଲେଖ ଯୋଗ୍ୟ 'ଓୟାରିସ୍ ଆଲଭୀର' 'ତାମ୍‌ରେ ଦରଯେ କା ମୁସାଫିର' । ଉର୍ଦ୍ଦୁଭାଷା ନିଜର ବେଗ ଓ ଆବେଗ ସଂଗ୍ରହ ପାଇଁ ସମାଲୋଚକ ଓ ଦ୍ୱିଧାଗ୍ରସ୍ତ ପାଠକ ଉଭୟଙ୍କନିକଟରେ ଅକୁଣ୍ଠ ପ୍ରଶଂସା ଲାଭ କରିଛି । ଏହା ବ୍ୟତୀତ "ଗଜଲକାନୟା ମାଜରାନ.ମା'"(ଗଜଲ ବୃତ୍ତାନ୍ତ)ଚେହେରା ପେ୍ ଚେହେରା' (ମୁହଁ ଉପରେ ମୁହଁ) 'ଉର୍ଦ୍ଦୁକୀ ବୋଲିୟାଁ' ଅଫସାନା-ରିବାୟତ ଓ ମସାଇଲ' (କଥା ସାହିତ୍ୟ : ଇତିବୃତ୍ତ ଓ ସମସ୍ୟା) 'ସୈୟଦ ନାଜିବ ଆସାରଫ ନଦଭୀ କେ ସ୍ୟକହାୟତ ଅ୍ୟର କାରନାମେଁ' (ଜୀବନୀ ଗ୍ରନ୍ଥ) ରଜସ୍ଥାନୀ 'ଯବାନ-ଓ-ଅବନ' (ଭାଷା—ଶୈଳୀ) ଶିରୋ-ନାମାରୁ ବୁଝାଯାଏ ଉର୍ଦ୍ଦୁ ସମାଲୋଚନା ଓ ଗବେଷଣା ଗତାନୁଗତିକ ପୋଷାକ ଖୋଲି ଫିଙ୍ଗି ନୂତନ ନୂତନ ବିଷୟ ଆଡ଼କୁ ଗତି କରୁଛି ।

ଉର୍ଦ୍ଦୁ ଗଳ୍ପର ଆସରରେ ପ୍ରତିଷ୍ଠିତ ଲେଖକମାନଙ୍କର ଭିଡ ଓ ଜନ-ପ୍ରିୟତା । ରାଜେନ୍ଦ୍ର ସିଂହ ବେଦୀ, ଉପେନ୍ଦ୍ର ନାଥ ଅଶକ, ହାୟାତଲ୍ଲାହ ଆନସାରୀ, ଜିଲାନୀ ବାନୋ, କାଶ୍ମୀରଲାଲ ଯାକିର, ପ୍ରକାଶ ପଣ୍ଡିତ, ଯୋଗେନ୍ଦ୍ର ପାଲ ପ୍ରଭୃତିଙ୍କ ଗଳ୍ପ ଗ୍ରନ୍ଥ ପୁନଃ ମୁଦ୍ରିତ ହୋଇଛି । ନୂତନ ଗଳ୍ପ ସଂଗ୍ରହ ପ୍ରକାଶ କରିଛନ୍ତି ଇତରର ହେହୋନ ଏବଂ ଜନାବା ଜୁୟାର-ତୁଲାନ ହଏଦର । ଏହି ଦୁଇ ବର୍ଷରେ ଅନ୍ତତଃ ଏକ ଡଜନ ନୂତନ ଗଳ୍ପ ଲେଖକ ଆବିର୍ଭୂତ ହୋଇଛନ୍ତି । ନବୀନ ପାଠକ ପାଠିକା ମଧ୍ୟ ସେମାନେ ପାଇଛନ୍ତି, ଯଦିଓ ସୀମିତ ସଂଖ୍ୟକ । ସେଟା ବଡ଼ କଥାନୁହେଁ । ଉଲ୍ଲେଖନୀୟ ଘଟଣା ହେଉଛି ପୂର୍ବତନ ଗଳ୍ପ ସମୂହଠାରୁ ସେମାନଙ୍କର ପାର୍ଥକ୍ୟ ହେଉଛି ଆକାଶ ପାତାଳ । ଯେମିତି 'ଧୂପ ଧୂପ୍ ସାୟା' (ରୌଦ୍ର ରୌଦ୍ର ଛାୟା) ଅଧୁରେ ଚେହେରେ (ବିକୃତ ମୁହଁ)ତେଓରୀ (ବଙ୍କାଭ୍ରୂ) ଆପନେ ଦ୍ରମସାୟେ

(ଆପଣଙ୍କର ବଂଧୁ) ଗୁମଶିହ୍ନ। କଲମାତ (ଶୋକାହତ ବା ବିଷର୍ଣ୍ଣ କଥା ସମୂହ) 'ସୁରଜ କା ଚକକର', ,ହୋଉା ହୁୟାପରିନ୍ଦା' (ପରାଜିତ ପକ୍ଷୀ) 'ଖୁଶିକେ ମୌସମ', 'ନୟେ ମକାନ କା ଦାମକ' (ନୂଆ ଘରର ଉଇ) ପ୍ରଭୃତି ଗଳ୍ପରେ ବିଧୃତ ହୋଇଛି ସମକାଳୀନ ବେପଥୁ ପରିବେଶ ଓ ଅସ୍ଥିର ମାନସିକତା ।

ଭାବ-କଳ୍ପନା—ଇମେଜ ରୂପ ନେଇଛି ନୂତନତାର ଆଙ୍ଗିକରେ । ଅବକାଶ ସମୟରେ କେବଳ ପଢ଼ିବା ପାଇଁ ନୁହେଁ ଏସବୁ ଗଳ୍ପ ଚିନ୍ତାକୁ ଓ ଯୁକ୍ତିକୁ ଉଦ୍‌ବେଳିତ କରେ, ଫଳରେ ପ୍ରସ୍ତୁତିହୀନ ପାଠକ ଅପ୍ରସ୍ତୁତ ହୁଏ ।

ଉର୍ଦ୍ଦୁ ଗଳ୍ପ ଯେତେଟା ଜନପ୍ରିୟ ଉପନ୍ୟାସ ସେତେଟା ନୁହେଁ । ହୁଏତ ଆର୍ଥିକ କାରଣରୁ ହୋଇଥାଇ ପାରେ, ଫଳରେ ଲେଖା ମଧ୍ୟ ମାନ୍ଦା, ତେବେ ଚଳିତ ସମୟର କେହି କେହି ସାହସ କରି ଲେଖୁଥିଲେ ମଧ୍ୟ ଉଲ୍ଲେଖ ଯୋଗ୍ୟ ସଂଭାବନା ଏ ପର୍ଯ୍ୟନ୍ତ କାହାରି ମଧ୍ୟରେ ଏବେବି ଲକ୍ଷଣୀୟ ହୋଇଉଠିନି ।

ଫୋର୍ଟଉଇଲିୟମ କଲେଜ ଏବଂ ଆବଦୁଲ ହାଲିମ ଖର (ଯିଏ ବଂକିମଚଂଦ୍ରଙ୍କର ଉପନ୍ୟାସ ଅନୁବାଦ କରିଥିଲେ )ଙ୍କ ସମୟରୁ ଅନୁବାଦର ସାହିତ୍ୟ ଉର୍ଦ୍ଦୁ ଇତିହାସରେ ଧାରାବାହିକ ତେବେ ଭାରତୀୟ ସାହିତ୍ୟ-ଠାରୁ ଦୂରେଇ ଯାଇ ତାର ଦୃଷ୍ଟି ପଡ଼ିଥିଲା ଏକ ସମୟରେ ପାଶ୍ଚାତ୍ୟ ଦିଗକୁ । ଆଶାର କଥା, ସଂପ୍ରତି ତାର ଦୃଷ୍ଟି ପୁଣି ଫେରି ଆସିଛି ଆମ୍ଭାସ ସମଜକୁ ! ତାମିଲ,ତେଲଗୁ, ମାଲୟାଲମଠାରୁ ବେଶ କେତୋଟି ଗଳ୍ପ, ଉପନ୍ୟାସ ଅନୂଦିତ ହୋଇଛି । ମରାଠୀ ଅନ୍ତର-ଏର ଉଲ ଅନୁବାଦ କରିଛନ୍ତି ବଦି ଉଜମ କାଦିର; ନରେନ୍ଦ୍ର ନାଥ ସୋମନେ ଅନୁବାଦ କରିଛନ୍ତ ଶରତ୍‌ଚନ୍ଦ୍ରଙ୍କର ଶ୍ରୀକାନ୍ତ । ଏ କ୍ଷେତ୍ରରେ ନ୍ୟାସନାଲ ବୁକ ଟ୍ରଷ୍ଟର ଭୂମିକା ଖୁବ ଉଲ୍ଲେଖଯୋଗ୍ୟ । ଏମାନେ ମୂଳ ଓ ଅନୂଦିତ ନାଟକ ମଧ୍ୟ ପ୍ରକାଶ କରିଛନ୍ତି ।

ଉର୍ଦ୍ଦୁ ନାଟକର ପ୍ରଭାବ ବିଶେଷ ଉଲେଖଯୋଗ୍ୟ ନୁହେଁ । ଏହି ଅଭାବ ପୂରଣ ପାଇଁ ଅଲୀଗଡ଼ ବିଶ୍ୱବିଦ୍ୟାଳୟର କେନ୍ଦ୍ରୀୟ ନାଟ୍ୟଚକ୍ର ଅତ୍ୟନ୍ତ ସଚେଷ୍ଟ । ଏମାନଙ୍କ ଉପସ୍ଥାପିତ ଅନୂଦିତ ନାଟକ ମଧ୍ୟରେ ଉଲେଖଯୋଗ୍ୟ 'ମୈଁ ୟ ଗୁଲାମ ହୁଁ'— ବୈଦ୍ୟନାଥ ଚକ୍ରବର୍ତ୍ତୀଙ୍କର (ଆମି କ୍ରୀତଦାସର ମର୍ମାନୁବାଦ) ଏବଂ ସାଂପ୍ରଦାୟିକ ଦଙ୍ଗାଉପରେ ଲେଖାଏ ଫସ୍ଟି

ମିନିଟ ଡକୁମେଣ୍ଟାରୀ' ଯାହାର ୨୬ ତମ ଅଭିନୟ ହୋଇଥଲା ମାତ୍ର କେତୋଟି ମାସ ଆଗରୁ

ଉର୍ଦ୍ଦୁ ଗଜଲ ନିଜ ସନାତନୀ ଐତିହ୍ୟରେ ଏବେ ମଧ୍ୟ ବିଶ୍ୱାସୀ । ସେଇ ଜମାନ ବିରହୀ ବ୍ୟକ୍ତିଗତ ବିରହ ବିଷାଦ ଅବଷାଦରେ କେବେବା ସ୍ୱାଦ ସୁଖରେ ବ୍ୟଂଜିତ ଓ ଚିତ୍ରିତ । ଏହାର ବିପରୀତରେ ଉର୍ଦ୍ଦୁ ଶାଇରୀ ବା କବିତାର ଦର୍ପଣରେ ସହର ଭିତ୍ତିକ ପରିବେଶ ଓ ଚେତନାର ନୂତନ ଚେହେରା ଝଲସି ଉଠୁଛି । ଆଲୋଚ୍ୟ ସମୟ ସୀମାରେ ପ୍ରକାଶିତ ପ୍ରାୟ ଅର୍ଦ୍ଧଶତ କବିତା ପୁସ୍ତକ ମଧ୍ୟ ଉଲ୍ଲେଖ କରିବା ଭଳି 'ଯନଯୀର—ଏ—ନଗମା' (ସଂକଳିତ ଗୀତ) ଓ 'ୟରଶ—ଏ—ଇନତିଶାଚ' (ସଂକଳିତ ପତ୍ର ସମୂହ) 'ବାରିସ' [ବର୍ଷା] 'ଭୀଗୀହୁଇ ଜମୀନ୍', 'ଖୁଲ୍‌ତା ସୀମସୀମ, ପ୍ରଭୃତି ।

ସାହିତ୍ୟ ଆକାଶରେ ପ୍ରାୟ ଝଡ ଉଠେ । କେଉଁତ କଣ ଉଡିଯାଏ କେତେ ପୁଣି ଉଡିଆସେ । ଉର୍ଦ୍ଦୁ ସାହିତ୍ୟ ଇତିହାସରେ ଏମିତି ଅନ୍ଧକାର ଏକାଧିକବାର ଦେଖାଦେଇଛି । ତାର ଫଳାଫଳ ପ୍ରକଟ ହୋଇଉଠିଛି ପ୍ରତି କ୍ଷେତ୍ରରେ । କିନ୍ତୁ ସେ ସବୁର ବିସ୍ତୃତ ଆଲୋଚନାକୁ ନଯାଇ ଆପାତତଃ ଏଠାରେ ଗୋଟିଏ ଅତିସଂକ୍ଷିପ୍ତ ପରିଚୟ ପ୍ରଦାନ କରଗଲା ।

ଓଡ଼ିଆ ବିଭଗ
ବିଶ୍ୱଭାରତୀ/ଶାନ୍ତିନିକେତନ

ଭଗୀରଥି ମିଶ୍ର

# ଛଦ୍ମ

ମୁଁ ତତେ ବେଶ ଚିହ୍ନି ପାରୁଚି
ଏଇ ବେଶରେ ଇ ଆସିଲୁ ଶେଷରେ !

ଅତିଂଦ୍ରିୟ ସକ୍ରିୟ ଗତିରେ ବଶ କରି ନେଲୁ
ଦୂରୁ ଦୂରଦୃଷ୍ଟି ମୋର ଫେରାଇ ଆଣିଲୁ
ପିତା ମାତା ସଖା ଜାୟା ପତି
ଭ୍ରାତା ଭଗ୍ନୀ ସବୁ ଆତ୍ମୀୟ ସ୍ୱଜନ ପରି
କୋଳେଇ କୁଣ୍ଢେଇ ମୋତେ ନିଜେଇ ତୁ ନେଲୁ
ସାଦରେ କହିଲୁ :
ସ୍ୱବିଂଦୁରେ ହୁଅ ଏବେ ସ୍ଥିର
ସ୍ୱୟଂ ଶୂନ୍ୟ ଆତ୍ମୀୟଦେହେ ପ୍ରଦକ୍ଷିଣ କର !

ମୋର ଏକ ପାଦ ଜନ୍ମରେ ତ ଆରେକ ମୃତ୍ୟୁରେ
ପ୍ରତିକୋଷ ଜୀବିତ ତୃଷିତ
ଟୋପାଏ ଅମୃତ ପରି ଝରିଲୁ ଓଠାଗ୍ରେ
ନିମିଷକେ ଶୋଷି ହେଇଗଲୁ ।
ତୋର ଏକ ଇ ଜୀବନ
ମୋହିଲୁ ମୋର ଜନ୍ମ—ମୃତ୍ୟୁମନ !
ତୋର ସିଂଧୁକାୟ ବିଂଦୁରୂପ
ଦେଖିପାରେ ଖାଲି କବି—ଭୂପ
ଦେଖା ମନ୍ତ୍ରେ ହୁଅଇ ଆମୃପ ।
ଖୋଲିଦେଲି ନିଜ ବେଶ ଭୂଷା
ଭୁଲି ଗଲି ମୋର ମାତୃଭାଷା
ଚୁଣି ଗଲି ନୀରବତା—ଭାଷା
ଜନମିଲି ସଶଦେ ସହସା ।

କଥାରେ ହିଁ ନାଡ଼ି ଛୁଏ ମଥା
କହି ଶୁଣି ଦେଲେ ଥରେ ଚିରକାଳ ବ୍ୟଥା
କହିଲି ଶୁଣିଲି ତତେ, ଗଲି ମୁଁ ପରତେ
ତୁ ଜନ୍ମା'ଅ ତୁ ମରାଅ ବାରବାର ମତେ
ସ୍ମୃତିଂଦୁରେ ସ୍ଥିର କରି
ପ୍ରଦର୍ଶିତ ହେଉ ।

କବିତା ତୁ, ରଚ୍ ଓ ରଚାଅ !



ଇଂରାଜୀ ଅଧ୍ୟାପକ, କୁଚିଣ୍ଡା କଲେଜ, କୁଚିଣ୍ଡା

ଲକ୍ଷ୍ମୀନାରାୟଣ ମହାପାତ୍ର

# ମଧ୍ୟାନ୍ତର

ଏ ଦିଗେ ମାଇଲ ମାଇଲ ସ୍ତୂପୀକୃତ ସମୟର ବାଲି
ସେ ଦିଗେ ମୃତ ଏକ ଅନ୍ଧାର ବକ୍ଷୋଜର ସମ
ଦୁଇଟି ପାହାଡ଼ ।
ରାତିର ଅନ୍ଧାରେ କାହିଁ ଚିଲିକାର ବୁକେ
ଏକକ ପ୍ରଦୀପ ତଳେ ଜାଳି ଜାଳି ରାତ୍ରିର ଆୟୁଷ

ଏଠି ଆମେ ମୂର୍ଚ୍ଛାହତ ଯାତ୍ରୀ କେତେ ଜଣ
ଏ କେଉଁ ମୃତ ନଗରେ, ନିର୍ଜନ ପ୍ରାସାଦେ
ଆମେ ଖାଲି ପ୍ରତୀକ୍ଷାରେ ବିମୁଗ୍ଧ, ବିବଶ,

ଏଠି ନାହିଁ ଷ୍ଟେସନର କୋଳାହଳ,
ଏଠି ନାହିଁ ସମୁଦ୍ରର ନୀଳ........
ତରଙ୍ଗର ଫେନାୟିତ ଦୁର୍ବାର ଲମ୍ଫନ
ଏଠି ନାହିଁ ଇନ୍ଦ୍ରଧନୁ ଅବା ଦୁଇ
ମଦିରାକ୍ତ ବକ୍ଷୋଜ, ଜଘନ
ଏଠି ନାହିଁ, କାଳ, ମହାକାଳ
ଏଠି ଖାଲି ସ୍ଥବିର ଗୋଟିଏ ମୁହୂର୍ତ୍ତ
ଜଡ଼ୀଭୂତ, ନିଶ୍ଚଳ ସମୟ
ଆଉ ଖାଲି ବାଲୁଚର ମାଇଲ ମାଇଲ
ପବନର କଥାବାର୍ତ୍ତା ଅବୋଧ୍ୟ, ଅଶ୍ଳୀଳ
ଆକାଶରେ ଘନୀଭୂତ ନୀଳ
ଦୂରନ୍ତରୁ ବାତାୟନୁ ପ୍ରତୀକ୍ଷିତ ଦୁଇ ଆଖି ଏବେ
ଚାହିଁରହେ ଝରିଯାଏ ଲୋତକର ବନ୍ୟା।
ପ୍ରତୀକ୍ଷା ନସରେ
ଟ୍ରେନ ନାଇଁ ଫେରେ ।
ଅଫେରା ସେ ବୁଭୁକ୍ଷାର ରଥ

ତା'ର ସେଇ ଦୁର୍ଜୟ ଶପଥ
ଆସିବନି ଫେରି,
ହଠାତ୍ ପ୍ରଚଣ୍ଡ ଶବ୍ଦରେ
ସବୁ ହେଲା ସ୍ତବ୍ଧ ଏବେ ନିଶ୍ଚଳ, ନିଥର
ସେଇ ଘନ ଜଡ ମୁହୂର୍ତ୍ତର
ସ୍ତୂପେ ସେ ଅଟକିଗଲା ରତିକ୍ଳାନ୍ତ ତନୁଟିଏ ପରି
ଲୋଟିଗଲା କାଳବକ୍ଷେ ; ଆସିଲାନି ଫେରି
ବର୍ଷାର ନୂପୁର ଧ୍ୱନି.....ଜ୍ୟୋସ୍ନାର ପ୍ରଲେପେ
ବର୍ଷା ନାଚେ ରିମ୍....ଝିମ୍....ଆକାଶର ଚନ୍ଦ୍ରାତପ-ତଳେ
ଗୋଟିଏ ପ୍ରଗୀତି ଝରେ । କାହା ପାଇଁ ଝୁରେ
କେତେ ଯୁଗ କେତେ ମନ୍ୱନ୍ତର
ବିତିଯାଏ, ପର୍ଦ୍ଦ ପର୍ଦ୍ଦ ଲୋଟି ଯାଏ
ସମୟର ବୃଦ୍ଧ କାପାଳିକ
ଲୁହି ଥାଏ, ବସ୍ତ୍ର ସବୁ ଟାଣେ ଦୁଃଶାସନ
ଗୋଟି ଗୋଟି ବସ୍ତ୍ର ଲୋଟେ ତଳେ
ତଥାପି ତ ସରେ ନାହି ଅଖିଳ ସମୟ
ଟ୍ରେନର ହୁଇସିଲ ବାଜେ.... ଟ୍ରେନ ନାଚି....ଚଳେ
ରକ୍ତନଦୀ ସନ୍ତରଣ ପରେ ଏ କା'ହାର ଶବ
ଜାନୁ ଭଗ୍ନ ପୌରୁଷର, ଟ୍ରେନ ଖାଲି ସେମିତି ଗୁମୁରେ
ଟ୍ରେନ ଧାଇଁ ଚଳେ ।



ଗିରିରୋଡ଼, ବ୍ରହ୍ମପୁର ୭୬୦୦୦୪

ସୌରୀବନ୍ଧୁ କର

# ପ୍ରଥମା

ଦୀର୍ଘଦିନ ରହି ପଡ଼ିଥିବା ମୋ କ୍ୱାଟରକୁ ଟୁର୍‌ରୁ ଫେରି ଖୋଲି ଦେବା ମାତ୍ରେ ଆଖିରେ ପଡ଼ିଲା କେତେ ଗୁଡ଼ିଏ ଚିଠି । ପନ୍ଦର ଦିନ କମ ନୁହେଁ । ଏ ଭିତରେ ଏତେ ଚିଠି ବସା ଠିକଣାରେ ପଠାଇଲା କିଏ ? ବୁଏତ ଅଫିସରୁ ହରି ଆଣି ଚିଠିଗୁଡ଼ିକ ଭିତରେ ଗଳାଇ ଦେଇ ଯାଇଛି । ସବୁ ଚିଠିଗୁଡ଼ିକ ଏକାଠି କରି ଟେବୁଲ ଉପରେ ରଖିଦେଇ ପ୍ୟାଣ୍ଟ ସାର୍ଟ ବଦଳାଇ ଧୋଇଧାଇ ହୋଇ ପଡ଼ିଲି, ଲୁଙ୍ଗିଟାକୁ ଭଲକରି ଅଣ୍ଟାରେ ଗୁଡ଼ାଇଦେଇ ଆରାମଚେୟାର-ଟାକୁ ପକାଇ ଦେଲି ବାହାରେ । ଗୋଟିକ ପରେ ଗୋଟିଏ । ସବୁ ସେଇ ଏକ ପ୍ରକାର ଚିଠି, କାହାର ଟ୍ରାନସଫର ବା କାହାର ଇନ୍‌କ୍ରିମେଣ୍ଟ ଇତ୍ୟାଦି । ଏ ଶଳା ଟ୍ରେଡ଼ୟୁନିୟନ ଧନ୍ଦା ଏଇଆ, ବିରକ୍ତ ଲାଗୁଥିଲା । ପନ୍ଦରଦିନ ଧରି ୟୁନିୟନ ଧନ୍ଦାରେ ବୁଲି ଫେରିବାବେଳକୁ ପୁଣି ସେଇ ଗୋଟିଏ କାର୍ଯ୍ୟ । ଗୋଟି ଗୋଟି ହୋଇ ସବୁ ଚିଠି ସରି ଆସିବା ବେଳକୁ ହଠାତ ସୁନ୍ଦର ଗୋଲ ଗୋଲ ଅକ୍ଷର ଲେଖାଥିବା ଧଳା ଲଫାପା ଉପରେ ଆଖି ଲାଗି ରହିଲା । ଚିଠିରେ ଷ୍ଟାମ୍ପ ନ ଥିଲା, କାହାର ବା ଏ ହୋଇପାରେ । ସେମିତି ମୋର ତ କେହି ଚିହ୍ନା ନାହାନ୍ତି । ଚିଠିଟା ଓଡ଼ିଆ ଲେଖା ହୋଇଥିଲା । ଅକ୍ଷର ଗୁଡ଼ିକ ମତେ ଅବା କୌଣସି ଶିଳ୍ପୀ ଆଙ୍କିଥିବା ଗୋଟିଏ ଗୋଟିଏ ଚିତ୍ର, କିଛିକ୍ଷଣ ମନ୍ତ୍ର ମୁଗ୍ଧ ଭାବରେ ଅନାଇ ରହିଥିଲି ସେହି ଲଫାପାଟିକୁ, ଅତି ସଯତ୍ନ ସହିତ ଖୋଲିବା ମାତ୍ରେ ତା ଭିତରୁ ଖସି ପଡ଼ିଲା ଧଳା କାଗଜରେ ଲେଖା ହୋଇଥିବା ଚିଠିଟି ।

"ପ୍ରିୟତମ,"

କେତେଥର ତୁମେ ମୋତେ କହିଲଣି, ମୁଁ ତୁମକୁ ଖଣ୍ଡେ ଚିଠି ଲେଖେ, ମାତ୍ର ମୁଁ ସବୁ ଥର ମନା କରିଦିଏ, ତୁମ କଥାରେ ମୁଣ୍ଡ ହଲାଇ ଦିଏ । କାଲି ଯେତେବେଳେ ତୁମ ସହିତ ମୋର ଦେଖା ହୋଇଥିଲା, ତୁମେ କହିଥିଲ ମୋତେ ଯିବାକୁ ତୁମ ପାଖକୁ, ନଚେତ ଦୀର୍ଘଦିନ ଦେଖା ହେବା ସମ୍ଭବ ହେବନି, ତୁମକୁ ଏତେ ଦିନ ନ ଦେଖିଲେ ମୁଁ ବଞ୍ଚିବି କେମିତି ?

ତୁମେ ଏଥିରେ ଟିକିଏ ରାଗି ଗଲ, କେହି ମତନ୍ତିନି— ସବୁ ମିଛ. ଏକଥା ମୋ ମନରେ ବହୁତ ଆଘାତ ଦେଲା । ତୁମେ କ'ଣ କଳ୍ପନା କରି

ପାରିବ ମୁଁ କେତେ କାନ୍ଦିଛି ତୁମଠାରୁ ଏଭଳି ଉତ୍ତର ଆଶା କରୁ ନଥିଲି । ମୁଁ ଗୋଟେ ସାଧାରଣ ଝୋଟ୍ଟୁ, ତୁମେ ବଡ଼ ଲୋକ, କେହି ମୋତେ ଖରାପ କରି କହିଲେ ମୋ ଚରିତ୍ରକୁ ନେଇ ଆକ୍ଷେପ କଲେ ମୁଁ ଭୁଲ ବୁଝିବିନି ବା କଳି କରିବିନି ମାତ୍ର ତୁମକୁ ନେଇ କହିବା ମାତ୍ରେ ମୋ ଦେହ ସହି ପାରେନା, ଏ ସତକଥା ଯେ ମୁଁ ନିଃସ୍ୱ, ବିବଶ ମାତ୍ର ମନ ଓ ହୃଦୟରେ କେବେ ତଳକୁ ଖସି ଯାଇନି । ତୁମେ ହିଁ କେବଳ ମୋ ମନର ପ୍ରିୟ ପ୍ରିୟତମ, କିନ୍ତୁ ତୁମେ ମୋ ପ୍ରତି ଏତେ ନିଷ୍ଠୁର ହେବ କଳ୍ପନା କରି ପାରୁ ନ ଥିଲି ।

"ଯେତେବେଳେ ମୁଁ ତୁମକୁ ଦେଖିଲି, ସେତେବେଳକୁ ତୁମ ପ୍ରତି ମୋର ଆକର୍ଷଣ ବଢ଼ି ଯାଇଥିଲା, ତୁମ ସହିତ କଥାବାର୍ତ୍ତା ପାଇଁ ମନ ବାରମ୍ବାର ଡ଼ାକୁଥିଲା । ମୋ ପ୍ରତି ମୋର ଅର୍ଥକୁ ଲୋଭକରି କଳାକାରର ସମସ୍ତ ସୌନ୍ଦର୍ଯ୍ୟକୁ ମୋ ଠାରୁ ଛଡ଼ାଇ ନେଇଥିଲେ । ପ୍ରତ୍ୟେକ କଳାକାର ଇଚ୍ଛା କରନ୍ତି ତାଙ୍କ କଳାର ବିସ୍ତୃତ ଅଭିବ୍ୟକ୍ତି ମିଳୁ ମାତ୍ର ସେଥିପାଇଁ ମାନସିକ ଓ ଶାରିରୀକ ସ୍ତରରେ ଖସିବା ଥିଲା ମୋର ରୁଚି ବହିର୍ଭୁତ । ମୁଁ ସବୁବେଳେ କାମ ଉପରେ ବିଶ୍ୱାସ କରୁଥିଲି । ଗୀତାର ସେହି ଶ୍ଳୋକଟି, "କର୍ମଣ୍ୟେ ବାଧିକାରସ୍ତେ ମା ଫଳେଷୁ କଦାଚନ" ମୁଁ କେବେ ଫଳ ଲାଭର ଆଶା ରଖି-ନଥିଲି । ତଥାପି ଜୀବନର ଈପ୍ସିତ ବସ୍ତୁ ପାଇବା ପ୍ରତ୍ୟେକଙ୍କର ଚରମ ଧେୟ ନୁହେଁ ? ସେହି ଅପାର୍ଥିବ ସତ୍ତା ସହିତ ନିଜକୁ ମିଶାଇବା ପାଇଁ ସମସ୍ତେ ବ୍ୟାକୁଳ ନୁହଁନ୍ତି କି ? ମାତ୍ର ମୋର ସବୁ ପରିଶ୍ରମ ଥିଲା ବ୍ୟର୍ଥ । ଗୋଡ଼ରେ ଘୁଙ୍ଗୁର ବାନ୍ଧି ନାଚିବା ଥିଲା କଷ୍ଟ ସାଧ୍ୟ । ଦିନରାତି ତଥାପି ଚାଲିଥିଲା ମୋର ଅକ୍ଲାନ୍ତ ପରିଶ୍ରମ । ମାତ୍ର ଅର୍ଥଲୋଭୀ ପତି ମୋର ସେଥିରେ ସନ୍ତୁଷ୍ଟ ନଥିଲେ, ଭଗବାନ ମଧ୍ୟ, ଗାଁ ଗାଁ, ସହର, ବଜାର ବୁଲି ମୋତେ ନଚାଉଥିଲେ । ଥକି ପଡ଼ୁଥିଲି; ଛାଡ଼ିବାର ଶକ୍ତି ମଧ୍ୟ ନଥିଲା—ତଥାପି ଦୟାର କାଣିଚାଏ ମଧ୍ୟ ପାଉ ନ ଥିଲି । ଛୋଟିଆ ଘରଟିରେ ଦି'ଟା ଫୁଟାଇ କରି ଖାଇବା ପାଇଁ ମଧ୍ୟ ପରିଶ୍ରମ କରିବାକୁ ହେଉଥିଲା । କଳା ଡେକ୍‌ଚିଟି ମାଜିବା ବେଳେ ମନ ଯେପରି ମୋର କଳା ପଡିଯିବା ପରି ଅନୁଭବ ହେଉ ଥିଲା । କିନ୍ତୁ ତାକୁ ସଫା କରିବାର ଶକ୍ତି ବା ସାମର୍ଥ ନ ଥିଲା ମୋ ପାଖରେ ।

ଛୋଟିଆ ଝିଅଟିଏ ମୁଁ କେତେ ବା ବୟସ ମୋର । ଏ ଅଳ୍ପ ବୟସରେ ଏତେ ଦୁଃଖ । ସବୁ ଲେଖିଲେ ଗୋଟେ ମହାଭାରତ ହେବ । ମୋ ଭିତରେ ଜ୍ଞାନ ପାଇବାର ଲାଳସା—ମାତ୍ର ସେହି ଭୋକକୁ ମେଣ୍ଟାଇବାକୁ ଉପାୟ ନଥିଲା ମୋ ପାଖରେ । ବାପା ଓ ସାବତ ମାର ତୁଚ୍ଛ ତାଚ୍ଛଲ୍ୟ ଭାବ ମୋର ଆଶାର

ଇନ୍ଦ୍ରଧନୁକୁ ପୁଷ୍ପିତ କରିବାକୁ ଦେଇ ନ ଥିଲି ମୋ ପାଖରେ । ବୟସ ବଢିବା ସାଙ୍ଗେ ସାଙ୍ଗେ ମୋ ଦେହରେ ଅଫୁରନ୍ତ ଯୌବନ ଲହରି ପିଟୁଥିଲା । କେତେ ସ୍ତାବକ ଆସି ଗଳ୍ପକଥାରେ ମୋ ମନକୁ ରଙ୍ଗାଇବାର ଚେଷ୍ଟାରେ ମୁଁ ହୋଇ ପଡୁଥିଲି ଅସୁସ୍ଥ ମନରେ ମୋ ବାପା ଓ ସାବତ ମା' କଥାରେ ମୋତେ ବୁଢା ଜମିଦାରଟାକୁ ବିକି ଟଙ୍କା ଆଣି ମଦ ପିଇବାର ଯୋଜନା ସହିବା ଥିଲା ମୋ ପକ୍ଷେ କଷ୍ଟକର । ଘରୁ ପଳେଇ ଆସିଥିଲି, ସହରରେ ପହଞ୍ଚି ମୋ ପତି ସହିତ ପ୍ରଥମ କରି ଭେଟ ହୋଇଥିଲା । କେବଳ ନିଜକୁ ବଞ୍ଚାଇବା ପାଇଁ, ସମାଜରେ ନାରୀର ସ୍ୱୀକୃତ ମର୍ଯ୍ୟାଦା ଉପଭୋଗ କରିବା ପାଇଁ ମୁଁ ତାର ହାତ ଧରିଥିଲି ।

ପଢିବାର ଝୁଙ୍କ ନେଇ ରତି ରାତି ଉଜାଗର । ଜହ୍ନ ବୁଡିବା ପର୍ଯ୍ୟନ୍ତ ମନକୁ ବୁଡାଇ ଦେଉଥିଲି ତା'ରି ଭିତରେ । ସ୍ୱାମୀଟି ମୋର ମୋ ଶରୀର ଉପରେ ଆକ୍ରମଣ କରି ପଇସା ଗଣି ସାରି ଗଡି ପଡୁଥିଲା ବିଛଣା ଉପରେ; ସେ ବା' କ'ଣ ଜାଣେ କଳାର ମୂଲ୍ୟ ।

ଏ ଦୁନିଆଁ ବଡ ଅଜବ । ଦିନର ଆଲୋକରେ ସମସ୍ତେ ସମାଜର ବଡପଣ୍ଡା, ମାତ୍ର ରତିର ଅନ୍ଧାରରେ । ପ୍ରତ୍ୟେକ ଦିନ ମୋ ଶରୀରକୁ ଆଘ୍ରାଣ କରିବାକୁ କେତେ ବଡପଣ୍ଡାମାନେ ଏକାଠି ହେଉଥିଲେ କେଜାଣି, ସ୍ୱାମୀଟି ମୋର ଏକା ମୋତେ ଛାଡି ପଳାଇ ଆସୁଥିଲା । କେବେହେଲେ ଚିନ୍ତା କରୁ ନ ଥିଲା ମୋର ଅବସ୍ଥା କ'ଣ ହେବ । ଘୃଣାରେ ଅନ୍ତର ମୋର ବିଷାକ୍ତ ହୋଇ ଉଠୁଥିଲା । ଆଜି ଯେଉଁ ଅବସ୍ଥାରେ ପହଞ୍ଚିଛି; ସେଠୁ କ'ଣ ଫେରି ହେବ ? କ'ଣ ଲେଖିବି ବୋଲି କ'ଣ ଲେଖି ଗଲିଣି । ତୁମ ସହିତ ଯେଉଁଦିନ ମୋର ପ୍ରଥମ ଦେଖା ହେଲା, ମେ ଭିତରେ ଦେଖା ଦେଇଥିଲା ସ୍ୱାର୍ଥ । ଅବ୍ୟବସ୍ଥିତ ଜୀବନରେ କିଛି ସ୍ଥିରତା ପାଇବାର ଲାଳସା, ତୁମ କଲମ ମୁନରେ ମୋ କଳାକୁଶଳତାର ଜୟ ଜୟକାର । ତୁମର ବ୍ୟକ୍ତିତ୍ୱ ଗାମ୍ଭୀର୍ଯ୍ୟପୂର୍ଣ୍ଣ ଗୃହାଣୀ, ଶାନ୍ତ ସ୍ୱଭାବ, ସ୍ୱଚ୍ଛନ୍ଦ ହୃଦୟ ମୋ ଭିତରେ ଥିବା ନାରୀତ୍ୱକୁ ବାରମ୍ବାର ଜଗାଇ ଦେଉଥିଲା । କେଉଁ ନାରୀ ଏପରି ଆକର୍ଷଣୀୟ ବ୍ୟକ୍ତିତ୍ୱକୁ ଦେଖି ଧୈର୍ଯ୍ୟ ଧରି ରହି ପାରନ୍ତା ? କିଏ ନିଜକୁ ଭୁଲି ନଯାନ୍ତା ? ମୋ ଭିତରେ ଏ ଯେଉଁ ପରିବର୍ତ୍ତନ ହେଲା, ଏଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ?

ମୁଁ ଖୋଜୁଥିଲି ମୋର ମନର ମଣିଷଟିକୁ ମାତ୍ର ସବୁଠୁ ନିରଶା

ହୋଇଥିଲି । ରଙ୍ଗମଞ୍ଚରେ ଅଭିନୟ ପ୍ରଦର୍ଶନ କରି ପାରଚି ଯାଉଥିଲି ଅଭିନୟ କରିବାକୁ ନିଜ ଜୀବନରେ ମଧ୍ୟ । ଭାବୁଥିଲି, ଜୀବନ ବୃଥା ହୋଇଗଲା, ଖାଲି ହାତରେ ଏ ସଂସାରରୁ ଫେରିବାକୁ ହେବ, ମାତ୍ର ଯେଉଁ ଦିନ ପ୍ରଥମ କରି ତୁମକୁ ଦେଖିଲି.........ବାସ୍, ସେତିକି ହିଁ ମୋ ପାଇଁ ଥିଲା ଯଥେଷ୍ଟ । ତୁମେ ସଞ୍ଚାର କଲ ମୋ ହୃଦୟରେ ଜୀବନ, ମୁଁ ମନେ ମନେ ତୁମକୁ ମୋର ଦେହ, ମନ ଓ ଆତ୍ମାକୁ ସମର୍ପି ଦେଲି ।

ମଥାରେ ସିନ୍ଦୂର ବିନ୍ଦୁ; ସ୍ୱାମୀ କହିପାରେ କଳଙ୍କିନୀ ମାତ୍ର ସେ ଜାଣି ଜାଣି ମୋତେ ଯେତେବେଳେ ବିକି ଚାଲିଛି; ସେତେବେଳେ ତାର ଏ ଆକ୍ଷେପ କୁଆଡେ ଗଲା, କ'ଣ କହିବାକୁ ଯାଇ କ'ଣ କହି ଦେଉଛି, ମନ୍ଦ ମନ୍ଦ ମଳୟ ପବନ, ପବନ ସାଂଗରେ ମନ ମଧ୍ୟ ଖେଳି ବୁଲୁଚି, ଓଠରେ ଈଷତ୍ ହାସ୍ୟ-ରେଖା ବାରମ୍ବାର ଉଠି ପୁଣି ମିଳାଇ ଯାଉଛି । ପ୍ରାଣଧର ଏକ ନୂତନ ପୁଲକ, ଉନ୍ମାଦନା ଓ ଅଭିନବ ସ୍ପନ୍ଦନ, ଆଖିରେ ବିଦ୍ୟୁତର ଝଲକ । ହୃଦୟଟା ଧଡପଡ଼ ହେଉଛି, ବାଆଁ ଆଖିଟା ରହି ରହି ବାରମ୍ବାର ନାଚୁଛି । ହେ ପ୍ରିୟତମ; ତୁମେ ହିଁ ମୋର ପରମ ଦେବତା, ମୁଁ ତୁମର ରାଧା, ତୁମେ ମୋର ସେହି ଗୋପାଳ ବାଳକ କୃଷ୍ଣ । ରାଧାକୁଞ୍ଜ ଏବେବି ଖାଲି । କୃଷ୍ଣବିନା ଜୀବନ ପାତ୍ର ଯେ ଶୂନ୍ୟ । ସବୁ ଯେପରି ନିଃଶେଷିତ । କେତେ କାଳ ହେଲା ମୁଁ ତୁମକୁ ଅପେକ୍ଷା କରି ରହିଛି ମୋ ଅପେକ୍ଷାର କ'ଣ ଶେଷ ନାହିଁ ? ଏ ଶୁଭ ଶକୁନ କାହା ପାଇ ? ତୁମ ଆଗମନ ଉପଲକ୍ଷେ ନୁହେଁ କି ? ମୋତେ ନିରାଶ କରିବନି ପ୍ରିୟ, ମୁଁ ତୁମର ଅପେକ୍ଷାରେ ।

ଇତି;

ତୁମର ପ୍ରତୀକ୍ଷ ମାଣା.... .... .... .... ....

ଚିଠିଟି ତଳେ କେବଳ ନାଁ ଟା ନ ଥିଲା ।

ନିର୍ବାକ ଭାବେ ଚିଠିଟି ପଢ଼ିସାରି ଉପରକୁ ଅନାଇ ରହିଥିଲି । ମେଘମୁକ୍ତ ଆକାଶ, ପାଖରେ ଅଧା ତିଆରି ହୋଇ ପଡ଼ିଥିବା ଘରଟା । ଅନ୍ୟ ପାଖରେ ବିରାଟ ପାଚେରୀ, ସାମନାକୁ ବଡ଼ ବଡ଼ ବାଉଁଶ ଗଛ' କେବେ କେବେ ଖସ୍ ଖସ୍ ଶବ୍ଦ, କାହାର ଅବା ଏ ଚିଠି ହୋଇ ପାରେ । ବିବାହର ଏତେ ଦିନ ଗତ ହେଲେ ମଧ୍ୟ ପତ୍ନୀଙ୍କଠାରୁ ଥରେ ହେଲେ ଏ ସଂବୋଧନରେ ଚିଠି ମିଳି ନ ଥିଲା, ମିଳିବାର ଆଶା ମଧ୍ୟ ନାହିଁ ।

ବୈଚିତ୍ର୍ୟମୟ ଭାବନାରେ କିଏ ଆଉ ଗଢ଼ିବାକୁ ଇଚ୍ଛାକରେ ଏକ ଚିତ୍ରିତମୟ ସୁଶୋଭିତ ଉଦ୍ୟାନ । ଏତେଦିନ ରହିବା ଭିତରେ କାହିଁ କେହିଁ ତ ଏଠି ଅନାନ୍ତି ନାହିଁ ମୋ ଆଡ଼େ । ପଣ୍ଡିତଙ୍କ ସ୍ତ୍ରୀ ଟିକିଏ ଲଜ୍ୟାମୟୀ କିନ୍ତୁ ପ୍ରେମ ବ୍ୟାପ ରରେ । କେବେ କେବେ ମନହୁଏ ତାଙ୍କୁ ପ୍ରେମ କରିବାକୁ । ପ୍ରେମ କ'ଣ ଏତେ ସହଜ । ଏଇଥି ପାଇଁ ବୋଧହୁଏ ଭଲ ପାଇବା ପାଗଳାମିରୁ ନିଜକୁ ମୁକ୍ତ ରଖିବାକୁ ଚେଷ୍ଟା କରି ଆସିଛି । ଏ ରାଜଧାନୀଟା ନିହାତି ଶୁଷ୍କ ଓ ନିରସ ଏଠାକାର ସବୁ ଟାଙ୍ଗରା ଭୂଇଁ

ବିକ୍ଷିପ୍ତ ଚିନ୍ତାଗୁଡ଼ାକ ଖେଳି ଯାଉଥିଲା ମୋ ମୁଣ୍ଡ ଭିତରେ । କ'ଣ ଭାବିବି କିଛି ସ୍ଥିର କରି ନପାରି ଉଦାସ ଆଖିରେ କେବଳ ଆକାଶକୁ ଚାହିଁବା ଛଡ଼ା ମୋର ଅନ୍ୟ କୌଣସି ଉପାୟ ଖୋଜି ବାହାର କରିବା ସମ୍ଭବ ନଥିଲା ହଠାତ୍ କାହାର ପାଟିରେ ମୁଁ ଚମକି ପଡ଼ିଲି । ପରସ୍ପର ବିପରୀତ ଦିଗରୁ ଦୁଇଟି ରିକ୍ସା ଆସି ଠିଆହେଲା ମୋ ଘର ସାମନାରେ । କୌଣସି ଖବର ନପଠାଇ ଗାଁରୁ ଆସି ମୋ ସ୍ତ୍ରୀ ତାଙ୍କର ବାଳୁଙ୍ଗା ପୁତ୍ରକନ୍ୟାଙ୍କୁ ଧରି ଓହ୍ଲାଇବା-ବେଳେ ପୁଅର "ବାପା, ଆମେ ଆସିଗଲୁ ।" ବୋଲି ବଡ ପାଟିରେ ଚିତ୍କାର ହିଁ ମୋର ଦୃଷ୍ଟି ସେ ଆଡ଼କୁ ନେଇ ଯାଇଥିଲା । ଅନ୍ୟ ରିକ୍ସାରୁ ଯେ ଓହ୍ଲାଇଲେ ମୋ ଆଖି ତାକୁ ବିଶ୍ୱାସ କରିବାକୁ ପ୍ରସ୍ତୁତ ନଥିଲା ସେ ମୋ ଆଡ଼କୁ ଏକ ତିର୍ଯ୍ୟକ ଚାହାଣିରେ ଚାହିଁଦେଇ ଫାଟକ ଖୋଲି ପ୍ରବେଶ କଲେ ମୋ ଘର ସାମନାରେ ଅନ୍ୟ ଘରଟିରେ । ମୋର ଚାହିଁବା କେତେବେଳଯାଏ ଲାଗି-ରହିଥିଲା କେଜାଣି ପତ୍ନୀ ଆସି ସେତେବେଳକୁ ହାତରୁ ଖୋଲା ହୋଇଥିବା ମୋର ସେଇ ଚିଠିଟିକୁ ନେଇ ଭିତରେ ଯାଇ ପଢ଼ିବାକୁ ଆରମ୍ଭ କରିଦେଇଥିଲେ ।



୮୬—ହାଉସିଙ୍ଗବୋର୍ଡ
ଲୁଇସ୍ ରୋଡ଼
ଭୁବନେଶ୍ୱର-୨

ଗୁରୁକଲ୍ୟାଣ ମହାପାତ୍ର

# ନର୍ତ୍ତକୀ

ବିସ୍ମୟରେ ବିସ୍ଫାରିତ ତା' ଆଖି ଦୁଇଟି
ନଚ୍ଚଇବା ବେଳେ ସିଏ କାହାକୁ ଅନାଇ ରହେ ?
ମୋତେ ଲାଗେ ମୋତେ, ତାକୁ ଲାଗେ ତା ନିଜକୁ
ଓ ସିଏ ଭାବେ ତାହ ରି ଆତ୍ମକୁ ।।

ତା ମୁହଁର ସ୍ୱେଦବିନ୍ଦୁ ଯେପରିକି କାକରର ଟୋପା
ବେଶ୍ ଠିକ୍ ଠିକ୍ କରେ ଯାହା ମୋତେ
ଖୁବ୍ ଭଲଲାଗେ ।
ମୁଁ ଉଠିଯାଇ ହେଲେ ଦର୍ଶକ ମେଳରୁ
ପୋଛି ଦେଉଥାନ୍ତି ତାର ସ୍ୱେଦବିନ୍ଦୁ ପାକ
କପାଳରୁ ?

ନର୍ତ୍ତକୀ ଅପାଙ୍ଗ ଡାଳେ ନାଚୁଥିବା ବେଳେ
ତା'ଅପାଙ୍ଗେ ଶୋଷ କେତେ, ନିଦ କେତେ
ସତେ ଯେମିତି ଆତ୍ମହତ୍ୟା କରେ ।

ତା' ହାତର ମେହେନ୍ଦାକୁ ଅପୂର୍ବ ଭଙ୍ଗୀରେ
ଯେ ନିଜେ ଦର୍ଶକ ମ ନଙ୍କୁ ଦେଖାଉବା ବେଳେ ମୋର
ମନେହୁଏ ପୃଥିବୀର ଦୁଃଖସବୁ
ଦୌଡ଼ୁଛନ୍ତି ଆତ୍ମରକ୍ଷା କରିବାକୁ
ପୃଥିବୀର କେଉଁ ଏକ ନିଭୃତ କୋଣରେ,
କି, କିମିଆଁ ଜାଣିଥାଏ ନର୍ତ୍ତକୀ ଜଣକ ?

ପ୍ରସ୍ଥାନ କଲେଣି ଏବେ ପ୍ରେକ୍ଷାଳୟେ ପ୍ରତ୍ୟେକ ଦର୍ଶକ
ଝାପସା ଅନ୍ଧାରରେ କେବଳ ବାରିହୁଏ—
ନର୍ତ୍ତକୀ ଫିଟାଉଥାଏ ତା'ବେନି ପାଦରୁ ଘୁଙ୍ଗୁର ହଳକ
କେହି ନୃତ୍ୟରସିକ ତ'ପାଖ ମାଡ଼େନାହିଁ, ଫିଟାଉଥାନ୍ତା
ଘୁଙ୍ଗୁର ଯୋଡ଼ିକ ।

କେତେ ଶିଘ୍ର ନୀରବତା ଭଙ୍ଗିବ ପ୍ରେକ୍ଷାଳୟେ !
ମୋ ପାଦ ଓଜନ ଲାଗେ, ମୋ ଦେହରୁ ଝାଳ ବହେ
ଅତି କ୍ଲାନ୍ତି ଯୋଗୁ ଓ ମୁଁ ଖାଲି ବ୍ୟସ୍ତ ହୋଇ
ଚାହିଁରହେ ନର୍ତ୍ତକୀକୁ ନର୍ତ୍ତକୀର ଅଙ୍ଗ ପ୍ରତ୍ୟଙ୍ଗକୁ
ଗୋଟିଏ ଲୟରେ ହିଁ ଗୋଟିଏ ଧ୍ୟାନରେ ।।



ସହସଂପାଦକ
ପ୍ରଜାତନ୍ତ୍ର, କଟକ-୨

■ ସୂର୍ଯ୍ୟ ମିଶ୍ର

# ॥ ବ୍ୟାସ ଆସୁଛନ୍ତି ॥



ବ୍ୟାସ ଆସୁଛନ୍ତି;
ଏତେ ଦିନର ବିରତି ପରେ ଆଖି ମଳି ମଳି
ପ୍ରଶାନ୍ତି ନେସା, ମଳିମା ମଖା ମୁହଁରେ
ସେ ଆସୁଛନ୍ତି । ହସିହସି । ଅଭୟ ମୁଦ୍ରାରେ ।

ଆଡ଼ ହୋଇଯାଉଛନ୍ତି ଶ୍ୱାପଦ ଓ
ସର୍ବନାଶୀ ଦୁର୍ଜନମାନେ;
ଶୀତଳ ହାଓ୍ୱାରେ,
ବଣଫୁଲର ସୁରଭିରେ,
କୁନି ଚଢେଇଙ୍କ କାକଳୀରେ,
କୋମଳ ପତ୍ରରାଜି ଗହଳିରେ,
ସ୍ନିଗ୍ଧ ବୃକ୍ଷ ଛାୟାର କାନିରେ
ଅବସାଦ—ଦୀର୍ଘ ଅବ ଶୋଷର ଝାଳ ପୋଛି ପୋଛି
ସେ କ୍ଳାନ୍ତ ନୁହଁନ୍ତି,
ଦୁଃଖୀ ନୁହଁନ୍ତି,
ବ୍ୟାସ ଆସୁଛନ୍ତି ।

ମଉଳା, ଦିନର ସୂର୍ଯ୍ୟ ନାଉ ହୋଇଛି
ପାହାଡ଼ ପିଠିରେ ।
ବନ୍ଧୁମାନେ ଫେରୁଛନ୍ତି ବିକଳରେ
ଅଣ ନିଃଶ୍ୱାସୀ ହୋଇ ଖାଦ୍ୟ ଯୋଗାଡ଼ରେ ।
ସଂଜ ବଳିଦା ପରି ନିଃସହାୟ ହୋଇ ଉଠୁଛନ୍ତି
ବେଶ୍ୟାମାନେ, କୁଷ୍ଠରୋଗୀମାନେ,
ଫୁଲମାଳ ପିନ୍ଧା ବିଦ୍ୱେଷୀ ନେତାମାନେ ।

କୁର୍ତ୍ସିତ ଖଣ୍ଡଗଦାରୁ
ନେପଟି ଗୃହୁଁଛନ୍ତି କୟାଁ ମଂଜିମାନେ

ଓଦା ହୋଇ—
କଅଁଳିବା ସ୍ୱପ୍ନରେ ତିଂତି ତିଂତି,
ଅହେତୁକ ଆନନ୍ଦରେ ସମସ୍ତେ
ନିରସକ୍ତ, ନୀରବ ଯେମିତି;
ବ୍ୟାସ ଆସୁଛନ୍ତି ।

ଆଡ଼ ହୋଇଯାଅ ପାପୀ ମାନେ,
ନଇଁଯାଅ ଫୁଲଝରୀ ପରି ତପୀ ମାନେ,
ହାତ ଧରାଧରି ହୋଇ ଘେରିଯାଅ ପ୍ରେମିକ ପ୍ରେମିକାମାନେ
ଅନୁପମ ଅନୁଭବସିକ୍ତ
ଅଙ୍କଲ ଙ୍କ ନିକଟରେ ।

ହେଙ୍ଗ; ଦେଖ,
ଯେଉଁଠି ଠିଆ ହେଲେ ଇ
ଗହଳି ହେଉ କି ଦୁର୍ଘଟଣା ହେଉ
ସେ ଗ୍ଭଲୁଛନ୍ତି ।
ବ୍ୟାସ ଆସୁଛନ୍ତି ।

ବିସ୍ତଜମାନ
ବର୍ତ୍ତମାନ କ୍ଷଣ ଦିଆ ଦ୍ୱିପହର,
ବିଗତ ଯୌବନା ପାଂଶୁଳୀ ନିର୍ଯ୍ୟାତିତା
ବିତା ରତିରେ, ଯାତ୍ରାରେ, ଲୋକଚକ୍ଷୁରେ—
ଚମତ୍କାର କଳ୍ପନାର ନିରପଦ ସ୍ପୃହାରେ
ଲଟ୍କା ଧ୍ୱଂସକାରୀ ଆଣବିକ ।

କଅଁଳି ଉଠୁଛି ଅଭିମାନ ।
ବିନାଶ ଯାଉଛି ଅପମାନ ।

ଲଙ୍ଗଳା ହେବାର ଦୁର୍ଯ୍ୟୋଗ ପାଶୋରିବାକୁ, ନା
ଛୁରୀ ପେଲିବାକୁ, ନା
ଶୀର୍ଣ୍ଣ ଦେହରେ ସଂଗ୍ରାମର ଚୋପ ବୋଲି
ଢିଲମର୍ଦ୍ଦିଳ ପଥର କ୍ଷେପରେ ଗ୍ଭଲିବାକୁ
ଠକ୍ ଠକ୍ କଠଉ ପାଦରେ
ବ୍ୟାସ ଆସୁଛନ୍ତି । ହସି ହସି । ଅଭୟ ମୁଦ୍ରାରେ ।

ଅଳ୍ପ ଅଳ୍ପ ଅନ୍ନ ଖାଇ
କଳ୍ପ କଳ୍ପ ବଞ୍ଚିବାକୁ  ମନ୍ତ୍ର  ପଢ଼ି
ବ୍ୟାଘ୍ର ଆସୁଛନ୍ତି ।

ଅବସର ବିନୋଦିଆ ପର୍ଯ୍ୟଟକ  ନୁହଁ
ଘର ଫେରନ୍ତା ପୁଅଟିଏ
ଚାଲି ଆସିଛି ଦୁର୍ଗମ  ଦୁଃଖର  ରେଜିମେଣ୍ଟରୁ
ପ୍ରତିରକ୍ଷାର  ସୂତ୍ର ଶୁଣାଇବାକୁ
ପରୀକ୍ଷିତ ସୈନିକ କାନରେ;
ଏଣିକି ଅବିରାମ

ଅହରହ ଗତି,
ଅକ୍ଷୟ ଅମର  ସ୍ଥିତି ।

ହସି ହସି । ଅଭୟ  ମୁଦ୍ରାରେ ।
ବ୍ୟାଘ୍ର  ଆସୁଛନ୍ତି  ।



ତେଲଙ୍ଗ ଷ୍ଟେସନ ବଜାର,
ପୋ : ବେରବୋଇ
ପୁରୀ
୭୬୨୦୧୬

ବ୍ରହ୍ମୋତ୍ରୀ ମହାନ୍ତି

# ଜରା ସଂପର୍କରେ—ସ୍ଥୂଳ ଦୃଷ୍ଟିକୋଣରୁ

ବାର୍ଦ୍ଧକ୍ୟ ହିଁ ବାର୍ଦ୍ଧକ୍ୟ, ଫିଙ୍ଗିଦେଇ ହୁଏନି ତ ତାକୁ,
ଦୃଢ଼ ମନୋବଳ ଏବଂ ମାନସିକ ସ୍ଥିରତା ସତ୍ତ୍ୱେବି, ସେତ ଆସେ ଛପି ଛପି
ତୁମ ଦେହ ମନ ତଳେ, କ୍ରମେ ତାର ଅଧିକାର ସାବ୍ୟସ୍ତ ସେ କରେ ।
ତୁମର ଶକ୍ତିକୁ ଓ ଇଚ୍ଛାକୁ କ୍ରମେ କ୍ରମେ କବ୍‌ଜାକରେ
ତୁମର ହୃଦୟକୁ କ୍ରମେ କରେ ମ୍ରିୟମାଣ, ଯେତେ ତମେ କରପଛେ ନିମନ୍ତ୍ରଣ
ପୂର୍ବ ତାରୁଣ୍ୟକୁ, ସେ ଫେରେକି କେବେ ?
ତୁମ ଦେହ ମନ ପରେ ଜଡ଼ତାର ଟାଣ ଆସ୍ତରଣ
କ୍ରମେ ପଡ଼ିଯାଏ; ଘୁଞ୍ଚାଇକି ହୁଏ ତାରେ ? ଆଖିପାଖେ
ରଖାଯାଏ ଦୃଷ୍ଟାନ୍ତ ଅନେକ, କୁହାଯାଏ ଏଇ ଏଇମାନେ
ବାର୍ଦ୍ଧକକୁ ଉପେକ୍ଷା କରି ବଞ୍ଚିଥିଲେ,କାଳ ସେମାନଙ୍କ ପାଖେ ନତଶିର ଥିଲା !
ଏସବୁ କଥାର କଥା, ମନ ବୁଝାଇବା ଲାଗି ସାନ୍ତ୍ୱନାର କଥା
ଜରାର ଗ୍ରାସରେ ଛଟପଟ ନୁହେଁ କିଏ, ଉପରକୁ ଦେଖାନ୍ତି କେବଳ
ଜରାରୁ ସେମାନେ ମୁକ୍ତ, ସମୟର ଭ୍ରୂକୁଟୀକୁ ଫାଙ୍କି ଦେଇ ପାରେ ?
ଝଡ଼ ଆସିଗଲେ ସବୁକିଛି ଛିନ୍ନଛତ୍ର, ସୂର୍ଯ୍ୟାସ୍ତର ପରେ
ଅନ୍ଧାରର ଆସିବାକୁ ପାରେକେହି ରୋକି ?
ଏ ସତକୁ ଅକପଟେ କହିବାକୁ କୁଣ୍ଠ କୁଣ୍ଠ କାହିଁକି ବା ହେବା
ଯଦି ଏହା ସତ୍ୟ—ଜରାକେବେ ସ୍ଥାୟୀ ନୁହେଁ ପୁନର୍ବାର
କୁଆଁ କୁଆଁ ଶବ୍ଦ ଲାଗି ସେ ଏକ ପ୍ରସ୍ତୁତି—
ଏ ଯିବା ଆସିବା ଭିତରେ ଝୁଲିଥିବା ଯାଏ
ବାର୍ଦ୍ଧକ୍ୟର ଅକ୍ଟୋପାଶେ ବାରମ୍ବାର ବନ୍ଦୀ ହୋଇ
ଛଟପଟ ହେବାକୁ ପଡ଼ିବ ।
ଏ ଜରାର ତେବେ କ'ଣ ଶେଷ ନାହିଁ ? ଅଛିଯଦି,
କେବେ ଏବଂ କେଉଁପରି ............?



ଜଗନ୍ନାଥ ପ୍ରସାଦ ଦାସ

# ଦ୍ୱୀପ

ମନ୍ତ୍ରୀଙ୍କ ଗାଡ଼ି ଯେତେବେଳେ ହାଇଓ୍ୱେ ଛାଡ଼ି ଗାଁର ମାଟିରାସ୍ତା ଧରିଲା, ସୀମାଚଳ ଲକ୍ଷ୍ୟ କଲା ଯେ ଏଇ ସାତଦିନ ଭିତରେ ଅନେକ କିଛି ବଦଳି ଯାଇଛି । ସାତଦିନ ତଳେ ଏଠାରେ ରାସ୍ତାବୋଲି କିଛି ନଥିଲା, ସବୁଆଡ଼େ ପାଣି ହିଁ ପାଣି ଥିଲା । ଡଙ୍ଗାରେ ସେଇ ଗାଁରେ ପହଞ୍ଚିବାକୁ ସେମାନଙ୍କୁ ଚାରିଘଣ୍ଟା ଲାଗିଥିଲା । ସେତେବେଳକୁ ବର୍ଷା ବି ପୁରାପୁରି ଛାଡ଼ି ନଥିଲା; ଦିନବେଳେ ଆକାଶରେ ମେଘଭର୍ତ୍ତି ଥାଇ ଅନ୍ଧାର ଅନ୍ଧାର ଦେଖା ଯାଉଥିଲା ଓ ଝିପି ଝିପି ବର୍ଷା ହେଉଥିଲା । ଅସରନ୍ତି ପାଣି ମଝିରେ ଅନେକ ଗାଁର ଟାପୁମାନଙ୍କୁ ଟପି ସେମାନେ ଯେତେବେଳେ ସେଇ ଗାଁରେ ପହଞ୍ଚିଲେ, ବର୍ଷା ଛାଡ଼ି ସାମାନ୍ୟ ଖରା ଦେଉଥିଲା । ସେଠାରେ ଗାଁର ନାମଗନ୍ଧ ନଥିଲା । ଚତୁର୍ଦ୍ଦିଗ ବ୍ୟାପୀ ଜଳରାଶି ମଝିରେ ସାମାନ୍ୟ ଶୁଖିଲା ଜାଗା ଓ ଗୋଟିଏ ବଡ଼ ଗଛକୁ ଘେରି ଗାଁର ପ୍ରାୟ ଦେଢ଼ଶହ ଲୋକ ବସିଥିଲେ । ଦୁଇଦିନ ଆଗରୁ ଗାଁ ଭାସି ଯାଇଥିଲା ଏବଂ ଲୋକମାନେ ଆସି ଆଶ୍ରୟ ନେଇଥିଲେ ଏଇ ଟାପୁ ଉପରେ ।

ପୂର୍ବଥର ସୀମାଚଳ ଗୋଟିଏ ସାହାଯ୍ୟକାରୀ ଦଳ ସହିତ ସେଠାକୁ ଯାଇଥିଲା । ଏଇ ଗାଁ ସହିତ ତାର ସାମାନ୍ୟ ପରିଚୟ ଥିଲା, କାରଣ ପ୍ରାୟ ବର୍ଷକ ପୂର୍ବରୁ ଦାରିଦ୍ର୍ୟର ସୀମାରେଖା ବିଷୟରେ ଲେଖିବା ପାଇଁ ସେ ଯେଉଁ ଗୋଟିଏ ନିର୍ଦ୍ଦିଷ୍ଟ ଗାଁକୁ ଚିତ୍ରଣ କରିବାକୁ ଯାଇଥିଲା, ସେଇଟି ଥିଲା ଏଇ ଗାଁ'ଟି । ସୀମାଚଳ ସହରରେ ମଧ୍ୟବିତ୍ତ ପରିବାରରେ ବଢ଼ି ଆସିଥିଲା ଏବଂ ଗାଁ ବିଷୟରେ ତା'ର କୌଣସି ଧାରଣା ନଥିଲା । ଏଇ ଗାଁଟିକୁ ଆସିଥିବା ବେଳେ ତାର କେବଳ ଗୋଟିଏ ଗ୍ରାମ୍ୟ ଅଞ୍ଚଳ ସହିତ ପରିଚୟ ହେଉ ନଥିଲା, ସେ ଦାରିଦ୍ର୍ୟକୁ ପାଖରୁ ଦେଖିବାକୁ ପାଇଥିଲା ପ୍ରଥମଥର ପାଇଁ । ଅଭାବ ଓ ଦାରିଦ୍ର୍ୟ ଯେ ଏତେ କଠୋର ଓ ଅମାନୁଷିକ ହୋଇପାରେ ସେ ଏଇ ଗାଁକୁ ଦେଖି ଜାଣିଲା । ଲୋକମାନେ କେବଳ ଦାରିଦ୍ର୍ୟର ନୁହେଁ, ମନୁଷ୍ୟତ୍ୱର ସୀମାରେଖା ତଳେ ଥିଲେ, କାରଣ ସେମାନେ ଯେଉଁଭଳି ଦୈନ୍ୟରେ ଚଳୁଥିଲେ, ସେଥିରେ ମଣିଷର ସମ୍ମାନ ନେଇ ବଞ୍ଚିବା

ସମ୍ଭବ ନ ଥିଲା । ଏଇ ଗାଁର ଘର ସବୁ ଝାଟି ମାଟିର କୁଡ଼ିଆ ଥିଲା ଏବଂ ଘର ଭିତରେ ମାଟି ହାଣ୍ଡି ଛଡ଼ା ଆଉ କାହାରି କିଛି ଅନ୍ୟ ଜିନିଷ ନ ଥିଲା । ଲୋକ ମାନଙ୍କର ଜମି ବାଡ଼ି ନ ଥିଲା; ସେମାନେ ଦିନ ମଜୁରୀ କରି ଚଳୁଥିଲେ ଏବଂ ଯେତେବେଳେ କାମ ମିଳୁ ନ ଥିଲା, ଜଙ୍ଗଲରୁ ଯାଇ ଚେର ମୂଳ ଖୋଳୁଥିଲେ ଅଥବା ଉପାସରେ ରହୁଥିଲେ ।

ସାମାଚଳ ତାର ଖବର କାଗଜରେ ଏଇ ଗାଁ ବିଷୟରେ ଏକ କରୁଣ କାହାଣୀ ଲେଖିଥିଲା । ସେ ଯେତେବେଳେ ଏଇ ଅଞ୍ଚଳରେ ବନ୍ୟା ହେବାର ଖବର ପାଇଲା, ସରକାରୀ ଅଫିସମାନଙ୍କ ସହିତ ଯୋଗସୂତ୍ର କରି ସେଠାକୁ ଯିବାକୁ ସମର୍ଥ ହୋଇଥିଲା ସାହାଯ୍ୟକାରୀ ଦଳ, ଖାଇବା ଜିନିଷ ଓ ଔଷଧ ଯାଉଥିବା ଡଙ୍ଗାରେ । ସେମାନେ ଯେତେବେଳେ ସେଇ ଗାଁ ପାଖରେ ପହଞ୍ଚିଲେ, ତାଙ୍କର ଡଙ୍ଗାକୁ ଦେଖି ଲୋକମାନେ ଆନନ୍ଦରେ ପାଟି କରି ତାଙ୍କ ପାଖକୁ ଲାଗି ଆସିଲେ । ସାମାଚଳକୁ ଦେଖି ଗାଁବାଲା ଖୁସି ହେଲେ । ଯଦିଓ ଲୋକମାନେ ବନ୍ୟାର ଘେରରେ ଦୁଇଦିନ ଅଖିଆ ଅପିଆ ରହିଥିଲେ, ଏଥରକ ସାମାଚଳ ସେମାନଙ୍କ ଭିତରେ କୌଣସି ଅସହାୟତା ଲକ୍ଷ୍ୟ କଲା ନାହିଁ । ଯାହା ସେ ଲକ୍ଷ୍ୟ କରିଥିଲା ବର୍ଷକ ତଳେ ସେମାନଙ୍କ ସହିତ କଥା-ବାର୍ତ୍ତା କରିବା ବେଳେ । ସେମାନେ ଯେପରି ଏଭଳି ପରିସ୍ଥିତି ପାଇଁ ଅପ୍ରସ୍ତୁତ ନ ଥିଲେ ଏବଂ ଖେଳିଲା ଚହିବାରେ ଅଭ୍ୟସ୍ତଥିଲେ, ଅଥବା ଏଇଭଳି ଏକ ଦୁର୍ବିପାକ ସେମାନଙ୍କୁ ଅନ୍ୟ ଲୋକରେ ପରିଣତ କରି ଦେଇଥିଲା । ଏହା ସହିତ ଲଢ଼ିବା ପାଇଁ ସେମାନେ ଯେପରି ବଦ୍ଧ ପରିକର ଥିଲେ ।

ଖାଇବା ଜିନିଷ ବଣ୍ଟା ହୋଇ ଯିବା ପରେ କୋଳାହଳ ସାମାନ୍ୟ କମିଲା ଏବଂ ଗାଁ ବାଲା ସେମାନଙ୍କର ଗାଁ କେମିତି ଭାସିଗଲା, ସେ କଥା କହିଲେ । ଯାହା କିଛି ଜିନିଷ ପତ୍ର ଥିଲା ତାକୁ ଧରି ସେମାନେ ଉଚ୍ଚ ଜମି ଉପରକୁ ଚାଲି ଆସିଥିଲେ,କିନ୍ତୁ ତାଙ୍କର କୁଡ଼ିଆ ଘର ସବୁ ଭାସି ଯାଇଥିଲା । ଆଉ କିଛି କ୍ଷୟକ୍ଷତି ହୋଇ ନ ଥିଲା,ଭିତରେ କେବଳ ଗୋଟିଏ ବୁଢ଼ା ପଡ଼ିମରିବା ଅବସ୍ଥାରେ ଥିଲା । ସାମାଚଳ ଯାଇ ବୁଢ଼ାକୁ ଦେଖିଲା । ତା ପାଇଁ ଆଉ କିଛି କରିବାର ନ ଥିଲା, କାରଣ ବୁଢ଼ା ସେତେବେଳକୁ ଶେଷ ନିଶ୍ୱାସ ନେଉଥିଲା । ତାର ପରିବାରର ଲୋକମାନେ ତାକୁ ଘେରି ବସିଥିଲେ ଏବଂ ବଣ୍ଟା ହୋଇଥିବା ଖାଇବା ଜିନିଷ ଖାଉ ଖାଉ ବୁଢ଼ାର ମରିବାକୁ ଅପେକ୍ଷା କରୁଥିଲେ ।

ଏଇ ସମୟରେ ଗଛ ପାଖରେ ପିଲାମାନଙ୍କର ଚିତ୍କାର ଶୁଣାଗଲା । ଏତେ ଦୁର୍ଦ୍ଦିନରେ ମଧ୍ୟ ପିଲାମାନଙ୍କର ଉତ୍ସାହ କମ ନ ଥିଲା । ସେମାନେ ତାଙ୍କର ଖେଳରେ ମାତି ଥିଲେ ଏବଂ ବର୍ତ୍ତମାନ ଗଛ ତଳେ ଛିଡ଼ା ହୋଇ ଗଛ ଉପରେ ଚଢ଼ିଥିବା ପିଲାକୁ ଅନାଇ ପାଟିଗୋଳ କରୁଥିଲେ । ଗଛ ଉପରେ ବିରାଡ଼ିଟିଏ ଚଢ଼ି ଯାଇଥିଲା ଏବଂ ତାକୁ ଧରିବା ପାଇଁ ପିଲାଟି ଗଛ ଉପରେ ଚଢ଼ିଥିଲା । ପିଲାଟି ତା ପଛରେ ଯିବାବେଳକୁ ବିରାଡ଼ି ଆହୁରି ଉପରକୁ ଚାଲି ଯାଉଥିଲା । ଏଥରକ ସବୁ ଗାଁ ବାଲା ଏଇ ଦୃଶ୍ୟ ଦେଖିବାକୁ ଆସି ଠିଆ ହେଲେ । ଏପରିକି ସେଇ ମରି ଯାଉଥିବା ବୁଢ଼ାର ଆତ୍ମୀୟମାନେ ମଧ୍ୟ ବୁଢ଼ାକୁ ଏକା ଛାଡ଼ି ଦେଇ ଗଛ ପାଖକୁ ଆସି ଗଲେ । ଶେଷରେ ଗଛର ସବା ଉପର ଡାଳରେ ପହଞ୍ଚି ପିଲାଟି ବିରାଡ଼ିକୁ ଧରିବାରେ ସଫଳ ହେଲା, ଏବଂ ପାଟି କରି କହିଲା, "ଏଥର ତଳକୁ ଫିଙ୍ଗି ଦଉଛି" ସାମାଚଳ କହିଲା । "ଏତେ ଉପରୁ ଫିଙ୍ଗିଲେ ବିରାଡ଼ି ତଳେ ପଡ଼ି ମରିଯିବ" । ପାଖରେ ଠିଆ ହୋଇଥିବା ଲୋକ ହସିଲା; "କହିଲା, ବିରାଡ଼ି କଣ ସହଜରେ ମରିବ ? ଯୁଆଡ଼େ ଫିଙ୍ଗିଲେ ବି ସେ ପାଦ ତଳକୁ କରି ପଡ଼ିବ ।

ସତକୁ ସତ ପିଲାଟି ବିରାଡ଼ିକୁ ଖୁବ୍ ଜୋରରେ ତଳକୁ ଫିଙ୍ଗିଲା, କିନ୍ତୁ ବିରାଡ଼ି ଆସି ଆରାମରେ ତଳେ ପଡ଼ି ଝାଡ଼ି ଝୁଡ଼ି ହେଲା ଓ ନିଜର ଲାଞ୍ଜକୁ ଚାଟିବାରେ ଲାଗିଲା । ତା ପରେ ସେମାନେ ବିରାଡ଼ିକୁ ଖାଇବାକୁ ଦେଲେ । ଦି ମିନିଟ ଭିତରେ ପୁଣି ସମସ୍ତେ ବିରାଡ଼ିକୁ ଭୁଲି ଯାଇ ସାମା-ଚଳକୁ ଘେରି ଠିଆ ହେଲେ । ଏଥରକ ସେମାନଙ୍କର ଅନୁରୋଧ ଥିଲା ଯେ ସାମାଚଳ ଯେମିତି ମନ୍ତ୍ରୀଙ୍କୁ ଆଣି ସେମାନଙ୍କ ଗାଁକୁ ଆସେ । ଭଲଦିନରେ ତ ଗାଁକୁ ଆସନ୍ତି ନାହିଁ, ଏଇ ଦୁର୍ଦ୍ଦିନରେ ଅନ୍ତତଃ ଆସି ସେମାନଙ୍କ ଗାଁକୁ ଦେଖି ଯାନ୍ତୁ ।

ଗାଁକୁ ଛାଡ଼ି ସେମାନଙ୍କର ଡଙ୍ଗା ପୁଣି ଖାଦ୍ୟ ସାମଗ୍ରୀ ବାଣ୍ଟିବାକୁ ଅନ୍ୟ ଗାଁକୁ ଗଲା । ସେମାନେ ଯେତେବେଳେ ବନ୍ୟାଞ୍ଚଳରୁ ଫେରିଲେ ସଂଧ୍ୟା ହୋଇ ସାରିଥିଲା ଏବଂ ପୁଣି ବର୍ଷା ଆରମ୍ଭ ହୋଇ ଯାଇଥିଲା । ସାମାଚଳ ସିଧା ଖବର କାଗଜ ଅଫିସକୁ ଯାଇ ତାର ରିପୋର୍ଟ ଲେଖିବାକୁ ବସିଲା ଏବଂ ବନ୍ୟା ବିଷୟରେ ଲେଖିବା ପରେ ଦେଢ଼ଶ ଲୋକ ଥିବା ଗାଁର ବୁଢ଼ାଟିଏ ଜରରେ ପଡ଼ି ମରିଯାଇଛି ବୋଲି ମଧ୍ୟ ଲେଖିଲା ।

ତା ପରେ ସୀମାଚଳ ଗାଁବାଲାଙ୍କୁ ଦେଇଥିବା ପ୍ରତିଶ୍ରୁତି ଅନୁଯାୟୀ ମନ୍ତ୍ରୀଙ୍କୁ ଖୋଜିବାକୁ ଆରମ୍ଭ କଲା । ଏ ଏକ କଠିନ ପ୍ରଚେଷ୍ଟା ଥିଲା । କନଫରେନସ ରୁମ, ସାଧାରଣ ସଭା, ପାର୍ଟି ଅଫିସ ଇତ୍ୟାଦି ଦେଇ ସୀମାଚଳ ଯେତେବେଳେ ମନ୍ତ୍ରୀଙ୍କୁ ଠାବ କଲା, ମନ୍ତ୍ରୀ ଟୁରରୁ ଫେରି ଥକା ହୋଇ ବସିଥିଲେ ଏବଂ ତାଙ୍କ ନିର୍ବାଚନ ମଣ୍ଡଳୀରେ କିପରି କିଭିଟ ଜିନିଷ ବଣ୍ଟା ହେବ, ସେ ବିଷୟରେ ଆଲୋଚନା କରୁଥିଲେ । ସୀମାଚଳ ତାଙ୍କୁ ସେଇ ଗାଁଟି କଥା କହିଲା ଏବଂ ସେଠାରେ ଲୋକମାନେ ଦୁଇ ଦିନ କିଛି ଖାଇ ନ ଥିବା କଥା ମଧ୍ୟ ଜଣାଇଲା । ଗାଁଟି ମନ୍ତ୍ରୀଙ୍କର ନିର୍ବାଚନ ମଣ୍ଡଳୀରେ ନ ଥିଲା ଏବଂ ମନ୍ତ୍ରୀ ଏ ଭିତରେ ଅନେକ ବନ୍ୟା ପ୍ରପୀଡ଼ିତ ଅଞ୍ଚଳ ବୁଲି ସାରିଥିଲେ । ସେ ତାଙ୍କ ରସ୍ତାରେ ପଡ଼ୁ ନ ଥିବା ଏଇ ଗାଁଟିକୁ ଯିବାକୁ ବିଶେଷ ଉତ୍ସାହ ଦେଖାଇଲେ ନାହିଁ । ସୀମାଚଳ ଏଥରକ ତାର ସାମ୍ବାଦିକତାର ଅମୋଘ ଅସ୍ତ୍ର ପ୍ରୟୋଗ କରି କହିଲା; "ଆପଣ ମତେ ସେ ଦିନ ଯୋଉ କଥା କହୁଥିଲେ....." ।

ମନ୍ତ୍ରୀଙ୍କର ସୀମାଚଳର ଖବର କାଗଜ ସହିତ ବିଭିନ୍ନ ପ୍ରକାରର ସଂପର୍କ ଓ ପ୍ରତିଶ୍ରୁତି କଥା ମନେ ପଡ଼ିଲା । ସେ ଏଥରକ କହିଲେ, "ମୁଁ ତ ଏତେ ଗାଁ ଦେଖିଲିଣି; ଆଉ କଣ ଦେଖିବି ?" ସୀମାଚଳ କହିଲା, "ଆପଣ ଗୋଟିଏ ସବୁଠାରୁ ଗରିବ ଗାଁ ଦେଖିବେ, ଯୋଉଠାରେ ଲୋକମାନେ ଏ ପର୍ଯ୍ୟନ୍ତ ଗଛ ଉପରରେ ଅଛନ୍ତି । ଏବଂ ଆପଣ ଯେ କହୁଛନ୍ତି ଯେ ବନ୍ୟାରେ କୌଣସି ଜୀବନ ହାନି ହୋଇ ନାହିଁ, ଏଇ ଗାଁରେ ଅନ୍ତତଃ ଜଣେ ଲୋକ ମରିଛି," ମନ୍ତ୍ରୀ ଏଥରକ ସତ୍ତ୍ୱରେ ରାଜି ହୋଇଗଲେ ଏବଂ ତାଙ୍କର ଅନ୍ୟ କାର୍ଯ୍ୟକ୍ରମ ମାନଙ୍କ ସହିତ ଏଇ ଗାଁକୁ ଯିବାର ପ୍ରୋଗ୍ରାମ ମଧ୍ୟ ସାମିଲ ହୋଇଗଲା ।

କିନ୍ତୁ ସେମାନେ ପ୍ରକୃତରେ ଯାଇ ପାରିଲେ ସାତ ଦିନ ପରେ । ସେତେବେଳକୁ ବର୍ଷା ପୂରା ପୁରି ଛାଡ଼ି ଯାଇଥିଲା, ଆଉ ପାଣି ନ ଥିଲା ଏବଂ ଏତେ ଖରା ହେଉଥିଲା ଯେ ମରୁଡ଼ିର ଆଶଙ୍କା ହେଉଥିଲା । ରସ୍ତା ଘାଟ ଶୁଖି ଯାଇଥିଲା ଏବଂ ଜିପ ବର୍ତ୍ତମାନ ସ୍ୱଚ୍ଛନ୍ଦରେ ଯାଇ ପହଞ୍ଚୁଥିଲା । ରସ୍ତା ଦି ପାଖକୁ ଅନାଇଲେ ବିଶ୍ୱାସ କରି ହେଉ ନଥିଲା ଯେ ମାତ୍ର ସାତ ଦିନ ତଳେ ଏଇ ସବୁ ତାରାପାଣି ଭର୍ତ୍ତି ଥିଲା । କେବଳ ମଝିରେ ମଝିରେ ଭାଙ୍ଗି ଯାଇଥିବା ରସ୍ତା ଓ ପୋଲକୁ ଦେଖିଲେ ବନ୍ୟାର ଭୟଙ୍କରୀତାର ସୂଚନା ମିଳୁଥିଲା ।

ବନ୍ୟା ହୋଇଥିବାର ଆଉ ଗୋଟିଏ ସ୍ମାରକୀ ଥିଲା ଗାଁ ମାନଙ୍କରେ ରିଲିଫ ଗ୍ରହଣ ନେବାକୁ ଆସୁଥିବା ଲୋକମାନଙ୍କର ଭିଡ । ଗାଁର ଆବାଳ ବୃଦ୍ଧ ବନିତା ବର୍ତ୍ତମାନ ସାହାଯ୍ୟ କାରୀ ଦଳମାନେ ନେଇ ଆସୁଥିବା ସାହାଯ୍ୟ ଅପେକ୍ଷାରେ ହିଁ ରହୁଥିଲେ । ମନ୍ତ୍ରୀ ସଙ୍ଗରେ ଯେତେ ଯେତେ ଗାଁକୁ ଗଲେ ସବୁଠାରେ ଏଇ ଭିଡ ଥିଲା, ଏବଂ ସବୁଠାରେ ସାହାଯ୍ୟର ପରିମାଣ ବିଷୟରେ ଅଭିଯୋଗମାନ ହେଉଥିଲା । ଯଦି ଓ ବିଭିନ୍ନ ଜାଗାରେ ଲୋକମାନଙ୍କର ସହାଯ୍ୟ ପାଇଁ ମାଟି କାମ ହେଉଥିଲା, ଗାଁର ସୁସ୍ଥ ସବଳ ଯୁବକମାନେ କାମ ନ କରି ରାସ୍ତା ପାଖରେ ରିଲିଫ ଗ୍ରହଣ ପାଇଁ ଧାଡି ବାନ୍ଧି ଛିଡା ହୋଇଥିଲେ । ଏ ଏକ ଅତ୍ୟନ୍ତ ଲଜ୍ଜାଜନକ ଦୃଶ୍ୟ ଥିଲା ।

ଏଇ ଭଳି ବିଭିନ୍ନ ଗାଁ ଦେଇ ଯାଉ ଯାଉ ରିଲିଫ ଜିନିଷ ସବୁ ସରିଗଲା । ମନ୍ତ୍ରୀ ସାମାଚଳକୁ ପଚାରିଲେ, "କଣ, ତମ ଗାଁକୁ କ'ଣ ଖାଲି ହାତରେ ଯିବା ।" ସାମାଚଳ କହିଲା, ମୁଁ ସେ ଗାଁ ଲୋକଙ୍କୁ କଥା ଦେଇଛି । ଅଳ୍ପ ସମୟ ପାଇଁ ହେଲେବି ଯିବା ।" ଏଥରକ ଜିପ ସେଇ ଗାଁର ରାସ୍ତା ଧରିବା ବେଳେ ସାମାଚଳ ନିଜକୁ ପ୍ରଶ୍ନ କଲା, ସେ କାହିଁକି ମନ୍ତ୍ରୀଙ୍କୁ ନେଇ ସେ ଗାଁକୁ ଯାଉଛି ? କେବଳ ତାର ପ୍ରତିଶ୍ରୁତି ପୂରଣ ପାଇ, ନାଁ ସେମାନେ ଗଲେ ଗାଁ ଲୋକଙ୍କର କିଛି ଉପକାର ହେବ ? ସେ ଗାଁର କଣ ସୁବିଧା ହୋଇପାରେ, ମନ୍ତ୍ରୀ ସେଠାକୁ ଗଲେ ? ସାମାଚଳ ବର୍ତ୍ତମାନ ନିଜକୁ ସାମାନ୍ୟ ଅପରାଧୀ ମନେକଲା । ଯାହା ସେ ମନେ କରିଥିଲା ସେଇ ଗାଁକୁ ପ୍ରଥମ ଥର ଯିବା ବେଳେ । ଲୋକମାନଙ୍କ ସହିତ କଥାବାର୍ତ୍ତା କରି ଫେରି ଆସିବା ପରେ ତାର ରିପୋର୍ଟ ଲେଖିବା ବେଳେ ତାର କେମିତି ମନେ ହୋଇଥିଲା ସେ ସେଇ ଲୋକମାନଙ୍କର ଦୁଃଖ ଦୁର୍ଦ୍ଦଶା ପାଇଁ ସେ ନିଜେ ଯେମିତି କୋଉ ହିସାବରେ ଦାୟୀ ।

ଗାଁ ମୁଣ୍ଡରେ ଯେତେବେଳେ ଯାଇ ଜିପ୍ ଅଟକିଲା, ସାମାଚଳ ନିଜ ଆଖିକୁ ବିଶ୍ୱାସ କରି ପାରିଲା ନାହିଁ । ଗାଁ ଠିକ୍ ସେମିତି ଥିଲା, ଯେମିତି ତାକୁ ସେ ବର୍ଷକ ତଳେ ଦେଖିଥିଲା । ଦି ଧାଡ଼ି ଭଙ୍ଗା କୁଡ଼ିଆ ଘର, ମଝିରେ ଖେଳୁଥିବା ଲଙ୍ଗଳା ପିଲା ଓ ବୁଲା କୁକୁର । ସେତେବଡ଼ ବନ୍ୟା ହୋଇଥିବାର କୌଣସି ଚିହ୍ନ ବର୍ଣ୍ଣେ ନାହିଁ । ମନ୍ତ୍ରୀ କହିଲେ, "କଣ, ଏ ଗାଁ ତ ବେଶ୍ ଠିକ୍ ଠାକ ଦେଖା ଯାଉଛି, ବରଂ ଅନ୍ୟ ଗାଁମାନଙ୍କରେ ବେଶି କ୍ଷୟ କ୍ଷତି ଦେଖା ଯାଉଥିଲା ।" ମନ୍ତ୍ରୀ ଠିକ୍ କହିଥିଲେ ଏବଂ ସାମାଚଳ ଚୁପ ରହିଲା । କିପରି ତାଙ୍କୁ ସାମାଚଳ ବୁଝାଇଥାନ୍ତା ଯେ ଏଇ ଗାଁରେ କ୍ଷୟକ୍ଷତି ହେବାପାଇଁ କିଛି ବି ନଥିଲା ।

ଗାଁରେ ଜିପ ପହଞ୍ଚିବାରୁ ଗାଁ ବାଲା ସେମାନଙ୍କୁ ଦେଖି ଆନନ୍ଦରେ ପାଟି କରି ସେମାନଙ୍କୁ ଘେରି ଠିଆ ହେଲେ । ମନ୍ତ୍ରୀଙ୍କ ପାଖରେ ସେମାନଙ୍କର କୌଣସି ଆପତ୍ତି ଅଭିଯୋଗ ନ ଥିଲା । ମନ୍ତ୍ରୀ ଓ ତାଙ୍କର ଜିପ ଗାଡ଼ି ଯେପରି କେବଳ ସେମାନଙ୍କର ସାମୟିକ ଅବସର ବିନୋଦର ସାମଗ୍ରୀ ଥିଲେ । ମନ୍ତ୍ରୀ ସେମାନଙ୍କୁ ଅତି ଅଳ୍ପ ଦିନ ଭିତରେ ଖାଇବା ଜିନିଷ ପହଞ୍ଚାଇ ଦେବାର ପ୍ରତିଶ୍ରୁତି ଦେଲେ । ତା' ପରେ ଆଉ କାହାରି ପକ୍ଷରୁ କିଛି କହିବାର ନ ଥିଲା । ଏଥରକ ସୀମାଚଳ ଚେତାଇ ଦେଲା, ଯେଉଁ ବୁଢା ମରି ଯାଇଥିଲା, ତାର ପରିବାରକୁ ମନ୍ତ୍ରୀ କିଛି ସାହାଯ୍ୟ ଦିଅନ୍ତୁ । ମନ୍ତ୍ରୀ ଯେତେବେଳେ ତତ୍କ୍ଷଣାତ ସାହାଯ୍ୟ ଘୋଷଣା କଲେ, ଗାଁବାଲା ହସିଲେ । କାରଣ, ବୁଢା ମରି ନ ଥିଲା । ଜିପ ପାଖକୁ ଆସି ନ ପାରି ଥିଲେ ବି ସେ ତା କୁଡ଼ିଆ ଆଗରେ ବସି ରହି ଏ ସବୁ କଥାକୁ ଉପଭୋଗ କରୁଥିବାର ଜଣା ପଡ଼ୁଥିଲା ।

ଗାଁ ଛାଡ଼ିବା ପାଇଁ ସେମାନେ ଗାଡ଼ିରେ ବସିଲେ । ଏଇ ସମଗ୍ର ଯାତ୍ରାଟି ବର୍ତ୍ତମାନ ଅର୍ଥହୀନ ମନେହେଲା । କଣ ପାଇଲେ ଗାଁର ଲୋକମାନେ ସେମାନଙ୍କ ଆସିବାରୁ ? ତାର ହୁଏ ତ ଲାଭ ହେଲା, ସେ ଯାଇ ଖବର କାଗଜରେ ଗାଁ ବିଷୟରେ ଲେଖିବ । କିନ୍ତୁ ଲୋକମାନେ ଯେଉଁ ଦୁର୍ଦ୍ଦଶା କାହାଣୀ ପଢ଼ିବାକୁ ଚାହୁଁଛନ୍ତି, ତାର ଉଦାହରଣ ତ ଏ ଗାଁରେ ନଥିଲା । ଏପରିକି ଯେଉଁ ବୁଢାକୁ ନେଇ ସାମାନ୍ୟ କରୁଣାର ଉଦ୍ରେକ ହୋଇପାରନ୍ତା, ସେ ମଧ୍ୟ ମରି ନଥିଲା । ମନ୍ତ୍ରୀଙ୍କ ଭଳି ସୀମାଚଳ ବି ନିରାଶ ହେଲା । ଜିପ ଛାଡ଼ିବାରୁ ମନ୍ତ୍ରୀ କହିଲେ; କ'ଣ ଏଥରକ ସନ୍ତୁଷ୍ଟ ‘ହେଲତ ? ହଉ କାଲି ଏଠିକି କିଛି ରିଲିଫ ପଠାଇ ଦବା ।”

ସୀମାଚଳ ଜିପରେ ବସି ପଛକୁ ଅନାଇଲା । ସଂଜର ନିଷ୍ପ୍ରାଣ ଆଲୁଅରେ ସବୁଆଡ଼ୁ ଅଲଗା ରହିଥିବା ଦ୍ୱୀପ ଭଳି ଗାଁଟି ମ୍ଳାନ ଓ ମଳିନ ଦେଖା ଯାଉଥିଲା । ବର୍ଷକ ତଳେ ସେ ଏଇ ଗାଁଟିକୁ ଯେମିତି ଦେଖିଥିଲା, ଠିକ ସେମିତି । କିଛି ବି ପରିବର୍ତ୍ତନ ହୋଇ ନ ଥିଲା ଏଠାରେ । ଏଇ ପୁରୁଣା ଗାଁରେ ଘର ସବୁ ସେମିତି ଭଙ୍ଗା ରୁଜା; ଲୋକମାନେ ସେମିତି ଗରିବ ଓ ସେମିତି ଭୋକ ଉପାସରେ ଏବଂ ସେମାନଙ୍କର ଆଶା ନିରାଶାରେ କୌଣସି କ୍ଷୟ ବୃଦ୍ଧି ହୋଇ ନାହିଁ । ବୁଢା ଏବେ ବି ବଞ୍ଚିଛି; ପିଲାମାନେ ଲଙ୍ଗଳା ହୋଇ ଖେଳୁଛନ୍ତି; ବିରଡ଼ି ମରି ନାହିଁ; ଗାଁ ବନ୍ୟାରେ ଉଜାଡ଼ ହୋଇ ଯାଇ ନାହିଁ । ସ୍ୱାଧୀନତା, ପଞ୍ଚବାର୍ଷିକ ଯୋଜନା ଏ ଗାଁର

କୌଣସି ଲାଭ କରି ନାହାନ୍ତି; ଅବହେଳା ଓ ବନ୍ୟାରେ ଗାଁର କ୍ଷତି ହେବାର କିଛି ନାହିଁ । ସାମାଚଳ ନିଜକୁ ସାମାନ୍ୟ ଆଶ୍ୱାସନା ଦେଲା ଏବଂ ଜିପ ମୋଡ଼ ବୁଲିବା ପୂର୍ବରୁ ଗାଁ ଆଡ଼କୁ ଶେଷ ଥର ପାଇଁ ଅନାଇଲା । ସବୁ ଠିକ ସେମିତି ଆଗ ଭଳି ଭଙ୍ଗା ଦଦରା ଦରିଦ୍ର କାତର କିନ୍ତୁ ବଞ୍ଚିବାର ଅଦମ୍ୟ ଇଚ୍ଛା ନେଇ ରହିଛି । କିଛି ବି ବଦଳି ନାହିଁ ଏଇ କେଉଁ କେତେ କାଳର ଗାଁ ଏବଂ ତାର ଲୋକମାନଙ୍କର ।



୨୨୬ ପଶ୍ଚିମ କିଦୱାଇ ନଗର
ନୂଆଦିଲ୍ଲୀ—୧୧୦୦୨୩







● ମନୋରଞ୍ଜନ ମିଶ୍ର

# ମାୟୂର ପୃଥିବୀ

ରାଧାଗୋବିନ୍ଦ ପଟ୍ଟନାୟକ । ସଂସାରେ ଥାଇ ସେ ସଦା ଉଦାସୀନ । ସଂସାରରୁ ବୈରାଗ୍ୟ ନେଇ ନଥିଲେ ମଧ୍ୟ ତାଂକ ଦୈନନ୍ଦିନ ରୁଟିନ ବଂଧା କିରାଣୀ ଜୀବନର ଅନେକ ଘଟଣା ତାଂକର ସେହି ଉଦାସୀନ-ତାର ପରିଚୟ ଦିଏ ।

ଏଇ, ଧରାଯାଉ, ସହରରେ ଲୋକସଂଖ୍ୟା ବଢିବା ଦ୍ୱାରରେ ଘଣ୍ଟାକୁ ବଢି ଯାଉଥିବା ମଶାଂକ ଖେଳପଡ଼ିଆ ତାଂକର ଶୋଇବା ଘରେ ରାଧାଗୋବିନ୍ଦ ବାବୁ ମଳିଧୂଳି ପିଆ ମାଟିଆ ମଶାରୀଟି ମଧ୍ୟରେ ସୁଖନିଦ୍ରା ଯାଇପାରନ୍ତି । ସେ କହନ୍ତି, "ମଶାବଣେ ମୁହିଁ ସଦା ଉଦାସୀନ ।"

'ଖଡ୍ଗାବଢ଼ି ଥୋଡ଼ ଥୋଡ଼ବଢ଼ି ଖଡ୍ଗା' ଏଭଳି ଏକ ଜୀବନରେ ବିରକ୍ତ ହୋଇ ପତ୍ନୀ ତାଂକର ଅବଶ୍ୟ ଅନେକ ସମୟରେ ଯୁଦ୍ଧ ଡାକରା ଦେଇଥାନ୍ତି ନିକଟବର୍ତ୍ତୀ ଅନେକ ଗୁଡ଼ିଏ ଭଡ଼ାଘରେ ତାଂକର ସେହି ଯୁଦ୍ଧ ଡାକରା ନିନାଦିତ ହୁଏ । ତାଂକ ଘରୁ ଦୁଇ ତିନୋଟି ଘର ଛାଡ଼ି ରିଡା ଗୋପାଳ ବାବୁ ଅନେକ ସମୟରେ ସେ ଡାକରାକୁ ନିଜ ପତ୍ନୀଙ୍କର ମନେକରି ଭୀତତ୍ରସ୍ତ ହୋଇ ପଡ଼ନ୍ତି । କିନ୍ତୁ ରାଧାଗୋବିନ୍ଦ ବାବୁ ନିକଟରେ ଥାଇ ମଧ୍ୟ ନୀରବ, ନିଶ୍ଚଳ, ସଦା ଉଦାସୀନ ।

ଅଫିସରେ ପାହାଡ଼ ଭଳି ଗଦା ହୋଇଥିବା ଫାଇଲ୍‌ର ଭାରରେ ଠିକ ଦଶଟାରୁ ସଂଧ୍ୟା ପାଞ୍ଚଟା ପର୍ଯ୍ୟନ୍ତ ଫାଇଲ ଉପରେ ମୁଁହ ଝୁଲି ପଡ଼ଥିଲେ ମଧ୍ୟ ରାଧାଗୋବିନ୍ଦ ବାବୁଙ୍କର ଫାଇଲ ସହ ଅତି ମଧୁର ସମ୍ପର୍କ । ସେ କହନ୍ତି, "ଫାଇଲ ପାହାଡ଼େ ମୁଁ ସଦା ଉଦାସୀନ ।"

ସବୁଦିନ ପରି ସେଦିନ ମଧ୍ୟ ଅଫିସ ଛାଡ଼ୁ ଛାଡ଼ୁ ସନ୍ଧ୍ୟା ଗଡ଼ି ଆସିଲାଣି । କଚେରୀ ସାମ୍ନା ରାସ୍ତା ଅଂଧାର ଓ ଜନଶୂନ୍ୟ ହୋଇ ଚାଲିଛି କିନ୍ତୁ ସେଦିନ କେବଳ ରାଧାଗୋବିନ୍ଦ ବାବୁ ନୁହନ୍ତି, ଅଫିସର ମଧ୍ୟ ଅଫିସ ଛାଡ଼ୁ ଛାଡ଼ୁ ଅଂଧାର । ସମସ୍ତେ କାର୍ଯ୍ୟବ୍ୟସ୍ତ । ପରଦିନ ଅଫିସ ଇନ୍‌ସ୍ପେକସନ

ହେବାର ଅଛି । ଧାଁ ଦୌଡ଼ ଚାଲିଛି କର୍ମଚାରୀଙ୍କ ମଧ୍ୟରେ ।

ରାଧାଗୋବିନ୍ଦ ବାବୁ ସାଇକେଲ ପାଡଲରେ ଗୋଡ଼ ଦେଲେ । କେତେ ପ୍ରକାର ଶ୍ରୁତିକଟୁ ମ୍ୟୁଜିକ ସହ ସାଇକେଲ ଆଗେଇ ଚାଲିଲା । ରାସ୍ତା ସମ୍ପୂର୍ଣ୍ଣ ଅନ୍ଧାର ଥିଲା । ସେକଥା ନୂଆ ନୁହେଁ, ପ୍ରାୟ ଅଧିକାଂଶ ସମୟରେ ସେହି ବଡ ବଡ଼ ବିଜୁଳି ଦଣ୍ଡମାନ ଲିଭିଯାଇଥାନ୍ତି । ଅନେକ ସମୟରେ ଦିନସାରା ଜଳି ରାତିରେ ଲିଭିଯିବା ମଧ୍ୟ ବିରଳ ନୁହେଁ ବୋଧହୁଏ ସେମାନେ ଦିନ, ରାତି ପାର୍ଥକ୍ୟ ଜାଣି ପାରନ୍ତି ନାହିଁ । ଯାହାହେଉ,ଉଦାସୀନ ରାଧାଗୋବିନ୍ଦ ବାବୁ ଯେ ସେଥିରେ ବିଚଳିତ ନୁହନ୍ତି, ଏକଥା କହିବା ବାହୁଲ୍ୟ ମାତ୍ର ।

କିଛି ବାଟ ସେ ଯାଇଥାନ୍ତି, ଦେଖିଲେ ଆଗରେ ଗୋଟିଏ ଲୋକଙ୍କୁ ବେଢି ବେଶ ଜନ ସମାଗମ ହୋଇଛି । ତାଙ୍କାଠି ନିକଟବର୍ତ୍ତୀ ଦୁଇଟି ବିଜୁଳି-ଖୁଣ୍ଟ ଛାଡ଼ି ତୃତୀୟଟିର ଆଲୋକରେ ସ୍ୱଳ୍ପ ଆଲୋକିତ । ସଂସାର ପ୍ରତି ଉଦାସୀନ ବ୍ୟକ୍ତିଟି କିନ୍ତୁ ନିଜର ଅଜ୍ଞାତରେ ସାଇକଲ ମୋଡ଼ ସେହି ଦିଗକୁ ବୁଲାଇ ନେଲେ । ନିକଟରେ ପହଂଚି ସେ ବେଶ ବାରିପାରିଲେ ପାଚିଲା ପଣସର ମହ ମହ ବାସ୍ନା ।

ସବୁ ଉଦାସୀନତା କେଉଁଆଡେ ଚାଲିଗଲା । ରାଧାଗୋବିନ୍ଦବାବୁ ସାଇକେଲ ରଖିଦେଇ ସିଧା ପଣସ ବିକାଳୀ ନିକଟରେ ହାଜର ହୋଇଗଲେ । ଅନ୍ଧାର ଭିତରେ ଲୋକ ଚିହ୍ନିବା କଷ୍ଟକର ଥିଲା । ତଥାପି ପଣସ ବିକାଳୀ ନୂଆ ଲୋକଟିର ଆବିର୍ଭାବ ଜାଣି ଦାମଟା ଜୋରରେ କହିଦେଲା, ପାଞ୍ଚଟଙ୍କା ଆଠଣା । ରାଧାଗୋବିନ୍ଦବାବୁ ପକେଟରେ ହାତମାରି ଦେଖିଲେ, ପାଂଚଟଙ୍କା ଛାଡି ପକେଟରେ ଅଛି । ପ୍ୟାଣ୍ଟ ପକେଟ ଅଣ୍ଡାଳିଲେ ଆଠଣା ନିଶ୍ଚୟ ହେବ । ହେଲେ ପଣସଟା ଭଲ ପଡ଼ିବତ, ଏତେ ଲୋକ ଜମା ହୋଇଛନ୍ତି ଯେତେବେଳେ ନିଶ୍ଚୟ ଭଲି ହୋଇଥିବ । ସେ ନିଜକୁ ବୁଝାଇଦେଲେ ।

ପଣସର ଦାମ କାଳେ ଖସିବ ବୋଲି ସମସ୍ତେ ଦୋ ଦୋ ପାଂଚ ହୋଇ ଛିଡ଼ା ହୋଇଛନ୍ତି । ସେମାନଙ୍କ ମଧ୍ୟରୁ ଜଣେ ଚାରି ଟଙ୍କା ଦେବାକୁ ରାଜି ଅଛି, ମାତ୍ର ଦୋକାନୀ ସେହି ଦରରେ ଛାଡ଼ିବାକୁ ରାଜି ନୁହେଁ । ଏପରି ସ୍ଥଳେ ରାଧାଗୋବିନ୍ଦ ବାବୁ ପାଂଚ ଟଙ୍କା ଘୋଷଣା କରି ପଣସଟା

ଉଠାଇ ନେଲେ । ହାତରେ ଟିପି ଟିପି ପଣସକୁ ସେ ପରୀକ୍ଷା କରୁଛନ୍ତି, ଏତିକିବେଳେ ଅନ୍ୟ କେହି ଜଣେ ପହଞ୍ଚି ପଣସର ଦାମ ଦେବାକୁ ରାଜି ହୋଇଗଲେ । ହେଲେ ରାଧାଗୋବିନ୍ଦବାବୁ ପଣସ ଛାଡ଼ିବାକୁ ନାରାଜ । ଆଗନ୍ତୁକ ସହ ସାମାନ୍ୟ ବଚସା କରି ସେ ପଣସ ଉପରେ ନିଜର ସ୍ୱାଧୀକାର ସାବ୍ୟସ୍ତ କଲେ ଓ ଘରମୁହାଁ ସାଇକେଲ ଚଳାଇଲେ । ଶେଷ ଆଗନ୍ତୁକର ସାଇକେଲ ତାଙ୍କର ଆଗରେ ।

ଟିକିଏ ବାଟ ଯିବାପରେ ତୃତୀୟ ବିଜୁଳି ଖୁଣ୍ଟର ଆଲୋକ ପ୍ରଥମେ ସେହି ଶେଷ ଆଗନ୍ତୁକଙ୍କ ଉପରେ ଅଜାଣି ହୋଇ ପଡ଼ିଲା । ରାଧାଗୋବିନ୍ଦବାବୁ ଚମକି ପଡ଼ିଲେ । ପଛରୁ ସେ ଠିକ ଚିହ୍ନି ପାରିଲେ, ସାଇକେଲଧାରୀ ତାଙ୍କର ଉପର ଅଫିସର ହର୍ତ୍ତା କର୍ତ୍ତା ଦୈବ ବିଧାତା; ତାଙ୍କର ମନେ ହେଲା ସେ ଯେମିତି ତଳେ ପଡ଼ିଯିବେ । ଅସ୍ୱନକ ବ୍ରେକ୍ ଉପରେ ହାତର ଚାପ ଜୋର ହୋଇଗଲା ଓ ସେ ଗଳି ଗଳି ସାଇକେଲ ଗଡ଼ାଇ ଗଡ଼ାଇ ଆଗେଇଲେ । ମନରେ ସେହି ଗୋଟିଏ ଆଶଂକା "ସାର୍ ମୋତେ ଚିହ୍ନି ପାରି ନାହାନ୍ତି ତ ?"

"ଓଃ କାହିଁକି ଯେ ମୁଁ ସେ ଅନ୍ଧକାର ଭିତରକୁ ପଣସ ଲୋଭରେ ଯାଉଥିଲି ।" ଧିକ୍କାର କଲେ ରାଧାଗୋବିନ୍ଦବାବୁ ନିଜେ ନିଜକୁ ।

ଯେମିତି ଗଳି ଗଳି ସେ ଆସି ପହଞ୍ଚିଲେ ଘରେ । ତାଂକ ସାଇକେଲର ଶବ୍ଦ ବାରିପାରି ତାଂକ କ୍ଷୁଦ୍ର ପରିବାରର ସାତଜଣ ସଭ୍ୟ ତାଂକୁ ପାଛୋଟି ନେବାକୁ ଆସିଲେ । ବାପା, ବାପା କଳରବରେ ସ୍ଥାନଟି ମୁଖରିତ ହୋଇ ଉଠିଲା କେହି ସାଇକଲ କ୍ୟାରିୟରରେ,କେହି ହେଣ୍ଡଲରେ,କେହି ରାଧାଗୋବିନ୍ଦ ବାବୁଙ୍କ କାନ୍ଧ ଉପରେ ଝୁଲିପଡ଼ି ତାଂକୁ ସ୍ୱାଗତ ଜଣାଇଲେ । ଏତିକିବେଳେ ପତ୍ନୀ ଆବିଷ୍କାର କଲେ,ଫୁଲି ଉଠିଥିବା କ୍ଷୁଦ୍ର ବ୍ୟାଗଟିକୁ । ପଣସର ମହ ମହ ବାସ୍ନାରେ ତାଂକର ମନ ଆନନ୍ଦରେ ପୁରି ଉଠିଲା । ଘର ଭିତରକୁ ଯାଇ ରାଧାଗୋବିନ୍ଦ ବାବୁ ନୀରବରେ ବସି ରହିଲେ ।

ତାଂକର ନୀରବତା ଦେଖି ପତ୍ନୀ କଅଁଳେଇ ପଚାରିଲେ, "ଆଜି କିଆଁ ମଉନ ?"

ସର୍ବନାଶ; ସର୍ବନାଶ; ସାଂସାରିକ ମାୟାମୋହରେ ପଡ଼ି ମୋର ଆଜି

ସର୍ବନାଶ ହେବାକୁ ଯାଉଛି ।" ରାଧାଗୋବିନ୍ଦ ବାବୁ ଉତ୍ତର ଦେଲେ ଦାର୍ଶନିକ ପରି ।

ପତ୍ନୀ ଚକ୍ଷୁ ବିସ୍ତାରିତ କରି ଅନାଇ ରହିଲେ । ରାଧାଗୋବିନ୍ଦ ବାବୁ ଏପରି ଦାର୍ଶନିକ ତତ୍ତ୍ୱ ବଦଳରେ ପ୍ରତିଦିନ ପାଆନ୍ତି ପତ୍ନୀଙ୍କଠାରୁ ସୁନ୍ଦର ଆହ୍ୱାନ । କିନ୍ତୁ ସେଦିନ ପତ୍ନୀ ବୋଧହୁଏ ପରିବେଶର ଗାମ୍ଭୀର୍ଯ୍ୟ କିଛି ବୁଝିପାରିଲେ । ସେ ରାଧାଗୋବିନ୍ଦ ବାବୁଙ୍କୁ ଡିମା ଡିମା ଆଖିରେ ଅନାଇ ରହିଲେ ।

ରାଧାଗୋବିନ୍ଦ ବାବୁ ଘରର ଗୋଟିଏ କୋଣକୁ ଚାହିଁ କହିଲେ "ଆଜି ମୁଁ ମୋହଗ୍ରସ୍ତ ହୋଇ କ'ଣ କଲି ? ସଂସାର ବଡ଼ ବିଷମୟ ପ୍ରଭୋ, ପାରିକବ ।"

ସନ୍ତାନମାନଙ୍କର କଳରବ ବେଳକୁ ବେଳ ବଢ଼ି ଚାଲିଲା । ଏ ପ୍ରକାର ପାଚିଲା ପଣସଟିଏ ତାଂକ ଘରେ ନୂଆ । ସେମାନେ ଚାରିଦିଗରୁ ପଣସଟିକୁ ବେଢ଼ିଯାଇ ଆନନ୍ଦରେ ତାର କଣ୍ଟକିତ ଶରୀର ଉପରେ ଗାଲ, ହାତ ଆଦି ଘଷି ହସି ହସି ଗଡ଼ି ଯାଉଥିଲେ, ପତ୍ନୀଙ୍କର ଦୃଷ୍ଟି ରାଧାଗୋବିନ୍ଦବାବୁଙ୍କ ଉପରୁ ଯାଇ ପଣସ ଉପରେ ଲାଖି ରହିଲା । ତା'ପରେ ସେ ହଠାତ ଉଠି-ଯାଇ ପଣସକୁ ଉଠାଇ ଭିତରକୁ ଚାଲିଗଲେ ।

ରାଧାଗୋବିନ୍ଦବାବୁଙ୍କର ଦୃଷ୍ଟି ସେମିତି ସ୍ଥିର । ମନରେ ମୋହ, ମାୟା ସମ୍ପର୍କୀୟ କେତେ ଚିନ୍ତା । ହଠାତ କେହି ଯେପରି ତାଂକୁ ଅନ୍ତର ମଧ୍ୟରୁ କହିଲା(ଶ୍ରୀକୃଷ୍ଣ ହେବେ ବୋଧହୁଏ) "ରାଧା ଏ ସଂସାରରେ କିଏ କାହାର ? ପତ୍ନୀ, ସନ୍ତାନ, ସନ୍ତତି ସେ ସବୁ ଖାଲି ମାୟା । ମାୟାରେ ଘାଣ୍ଟି ଚକଟି ହୁଅ ନାହିଁ । କର୍ମ କର, ଫଳରେ ଆଶା ରଖ ନାହିଁ ।"

ରାଧାଗୋବିନ୍ଦବାବୁ ଯେପରି ହଜିଲା ବୁଦ୍ଧି ଫେରି ପାଇଲେ । ସେ ସଂଗେ ସଂଗେ ଉଠି ରୋଷେଇ ଘର ମଧ୍ୟରେ ପଶିଗଲେ ।

ସେତେବେଳକୁ ତାଂକର ପତ୍ନୀ ଗୋଟିଏ ଥାଳୀ ଭଲ କରି ଧୋଇ ଧାଇ ଆଣି ପଣସଟି ନିକଟରେ ରଖିଛନ୍ତି । ତାଂକୁ ବେଢ଼ି ବସିଛନ୍ତି ତାଂକର ସନ୍ତାନମାନେ । ସମସ୍ତଂକର ଆଖି ପଣସ ଉପରେ ଓ ସମସ୍ତେ କଳରବରତ ।

ପତ୍ନୀ ଠିକ ପଣସଟିକୁ ଆଣି ଫଟେଇବାକୁ ଯାଉଛନ୍ତି, ରାଧାଗୋବିନ୍ଦବାବୁ

ପାଟି କଲେ, 'ରହ ପଣ୍ଷସଫଟାଅ ନାହିଁ ।''

ସମସ୍ତେ ନୀରବ ହୋଇଗଲେ । ସମସ୍ତଙ୍କର ଦୃଷ୍ଟି ଯାଇ ମିଶିଗଲା ରାଧାଗୋବିନ୍ଦବାବୁଙ୍କର ଦୃଷ୍ଟି ସହିତ । ରାଧାଗୋବିନ୍ଦବାବୁଙ୍କ ମଧ୍ୟରେ କର୍ତ୍ତବ୍ୟର ଆହ୍ୱାନ । ପୁତ୍ର, ପତ୍ନୀ ଏମାନଙ୍କର ମାୟା ତାଂକ ଆଗରେ ତୁଚ୍ଛ । ହଠାତ ସେ ପଣସଟିକୁ ବ୍ୟାଗରେ ଗଳାଇ ଚୋର ପରି ସାଇକେଲ ଧରି ବାହାରି ଗଲେ ।

ସମସ୍ତ ସନ୍ତାନମାନଙ୍କର ଏକକାଳୀନ କାନ୍ଦର ସ୍ୱର ଶୁଣି ପାରୁଥିଲେ ରାଧାଗୋବିନ୍ଦବାବୁ ଅନେକ ବାଟ ପର୍ଯ୍ୟନ୍ତ । ପତ୍ନୀ ନିର୍ବାକ ହୋଇ ଯାଇଥିଲେ ।

ରାଧାଗୋବିନ୍ଦବାବୁ ସିଧା ପହଂଚିଲେ ତାଂକର ସେହି ଅଫିସରଙ୍କ ଘରେ । କଲିଂବେଲ ଟିପି ଅପେକ୍ଷା କରି ରହିଲେ । ଅଫିସରଙ୍କ ସ୍ତ୍ରୀ କିଛି ସମୟ ପରେ ଆସି କବାଟ ଖୋଲିଲେ । ତାଂକୁ ସାଷ୍ଟାଂଗ ପ୍ରଣିପାତ କରି ରାଧାଗୋବିନ୍ଦବାବୁ ତାଂକ ପାଦତଳେ ପଣସଟି ସମର୍ପି ଦେଇ ଆସିଲେ । ତାଂକଠାରୁ କିଛି ଉତ୍ତର ପାଇବା ପୂର୍ବରୁ ସେ ତାଙ୍କର ସାଇକେଲ ସିଟ ଉପରେ ବସି ସାରିଥିଲେ ।

ପରଦିନ ଅଫିସରେ ରାଧାଗୋବିନ୍ଦବାବୁ ଅଫିସରଙ୍କୁ କହିଲେ, ''ଆଜ୍ଞା, ପଣସଟିଏ କାଲି ଦେଇ ଆସିଥିଲି.... ।''

''ଧନ୍ୟବାଦ । ଖୁବ ଭଲ ପାଚିଥିଲା ।'' ସେ ଉତ୍ତର ଦେଲେ ।

ରାଧାଗୋବିନ୍ଦବାବୁ କାନ ମୁଣ୍ଡାରେ ବାରମ୍ବାର ହାତ ଘଷି ଘଷି କହିଲେ ''କାଲି ଆପଣ ଯେଉଁ ପଣସଟା ମୂଲୋଭ ଥିଲେ, ଏଇଟା ସେହି ପଣସ ।''

ଅଫିସର ଆଶ୍ଚର୍ଯ୍ୟ ହୋଇ ପଶ୍ଚରିଲେ, '' ମୁଁ ମୂଲୋଭ ଥିଲି ? କେତେବେଳେ ? କାଲି ପରା ସନ୍ଧ୍ୟା ବେଳେ ମୁଁ ଯାଥିଲି ଇନିସ୍‌ପେକ୍‌ସନ୍ ପାଇଁ ଆସୁଥିବା ସାହେବ ମାନଙ୍କୁ ରିସିଭ୍ କରିବା ପାଇଁ ।

ରାଧାଗୋବିନ୍ଦବାବୁଙ୍କ ପାଟିରୁ ଅଙ୍ଗତ୍ୟା ବାହାରି ପଡ଼ିଲା, ' ମାୟା ସାର୍ ମାୟା, ସବୁ ମାୟା ।''

ଗଂଗାଧର ମେହେର ମହାବିଦ୍ୟାଳୟ
ସମ୍ବଲପୁର

# ଦୁଃଖ

● ରମଚନ୍ଦ୍ର ସାହୁ

ହେଲେ ମୁଁ କେମିତି ଜାଣିବି ଯେ କ'ଣ ତୋର ଦୁଃଖ ?
ଖୋଲିକହ କି ଦୁଃଖରେ ଦୁଃଖୀରେ ମାନିନୀ
ଯେଉଁଠିକି ନିରର୍ଥକ ଦୁଃଖର ଅର୍ଥ
ଖୋଜିଲେ ମିଳେନି ସଂଜ୍ଞା ସୁଖ ଓ ଦୁଃଖର ।
ଦୁଃଖ କ'ଣ ଜମାଟ ବନ୍ଧା ଲୁହର ବାଦଲ
ଥମ୍ ଥମ୍ ତୋ ମୁହଁ ଆକାଶେ,
ଦୁଃଖ କ'ଣ ତୋ ଆଖିର ବେଳା ପରେ
ହଜିଥିବା ଯୌତସବୁ ପାଇବାର ମୋହ ?
ଦୁଃଖ ଏଠି ଦୁଃଖ
ସୁଖ ଏଠି ଦୁଃଖ
ଦୁଃଖର ଯାହା ଭିନ୍ନ ନାମ ସୁଖ
ତେବେ କ'ଣ ଦୁଃଖ ହିଁ କେବଳ ଦୁଃଖର ସଂଜ୍ଞା
ଦୁଃଖ ଏକା ଦୁଃଖ
ଚିରନ୍ତନ ସତ୍ୟ
ନିତ୍ୟ ନିୟମିତ ?
ଥରୁଟିଏ ଖୋଲିଦେଇ ତୋ ଦୁଃଖର ଲୁହାର କବାଟ୍
ତୁ କିଆଁ କହିଲୁନି : ଦୁଃଖ ମୋର ଏଇ
ବରଂ ଅଉଟୁ ପାଉଟୁ ହେଉ ଦରମଲା ପକ୍ଷୀଟିଏ ପରି
ଯେବେ ଛାଡିରେ ତୋ ମାଡିବସେ ଯନ୍ତ୍ରଣାର ଭୂତ
ହୁତୁ ହୁତୁ ଜଳିଯାଏ ଜଉର ହୃଦୟ ତୋର
ପାଇବାର ଅନେକ ଇଚ୍ଛାରେ
ହେଲେ ମୁଁ କେମିତି ଜାଣନ୍ତି ଯେ ସେଇ ତୋର ଦୁଃଖ
ତୁ ଦୁଃଖୀ, ତୋ ଇଚ୍ଛାର ଧାନବିଲ ଧୋଇଗଲା ବୋଲି
ମୁଁ ଦୁଃଖୀ : ଯେଣୁ ତୋ: ଦୁଃଖର ପ୍ରଥମ କାରଣ
ସତରେ; ଦୁଃଖୀ ତୁ ନା ମୁଁ ?

●

ଧୋବଶିଳା, ବାଲେଶ୍ୱର—୭୫୬୦୪୦.

ସାମାଜିକ ସମସ୍ୟା

ଡଃ ପ୍ରଫୁଲ୍ଲ ଚନ୍ଦ୍ର ଦାଶ

# ଜାତକ ପୋଡ଼ା ଅଭିଯାନ

ସତ୍ୟବାଦୀ ବନ ବିଦ୍ୟାଳୟର ଦୁର୍ବାସା ଗୋସେଇଁମାନେ ଅତୀତରେ ପଇତା ଛିଣ୍ଡା ଅଭିଯାନ ଆରମ୍ଭ କରିଥିବା ବିଷୟରେ ପାଠକେ ଭଣା ଅଧିକେ ଅବଗତ ଥିବେ । ଓଡ଼ିଆ ଲୋକେ ରଗିଲେ ହିନ୍ଦୀ କିମ୍ବା ଇଂରାଜୀ କହିଲା ପରି ଗୋସେଇଁମାନେ ରଗିଗଲେ ବ୍ରହ୍ମଚଣ୍ଡାଳ ହୋଇ ଏମିତି ପଇତା ଛିଣ୍ଡାଇବା କଥା କେହି କେହି କହନ୍ତି, ମାତ୍ର ସତ୍ୟବାଦୀର ଗୋସେଇଁମାନେ ଯଦିବ ପଇତା ଛିଣ୍ଡାଇଥିଲେ, ତା ମୂଳରେ ଗୋଟାଏ ବଡ଼ ଆଦର୍ଶ ରହିଥିଲା— ହରିଜନ ସେବା । ମାତ୍ର ଆଜିକାଲି ହରିଜନମାନେ ମିଶ୍ର, ଆଚାର୍ଯ୍ୟ, ତ୍ରିପାଠିକୁ ହଂଙ୍ଗା ବଦଳାଇଲା ପରେ; ସରକାର ଛୁଆଁ ଅଛୁଆଁକୁ ଆଇନ ଦ୍ୱାରା ଉଠାଇ ଦେଲା ପରେ, ହରିଜନମାନେ ମନ୍ତ୍ରୀ-ମୁଖ୍ୟମନ୍ତ୍ରୀ ହେଲାପରେ ଏବଂ ସର୍ବୋପରି ଦୀକ୍ଷାପରେ ବଇଷ୍ଣବ; ବିବାହପରେ କରଣ ସଂପ୍ରଦାୟ, ଗନ୍ଧା ପୂର୍ଣ୍ଣମୀରେ ଶୂଦ୍ରମାନେ ତଥା ସବୁ ସୌନ୍ଦର୍ଯ୍ୟଭିମାନୀ ନାରୀମାନେ କାନ୍ଧରେ ପଇତା ପକାଇବାକୁ ପସନ୍ଦ କରୁଥିବାରୁ ଏପରି ଏକ ପଇତା ଛିଣ୍ଡା ଅଭିଯାନର ଆବଶ୍ୟକତା ହୁଏତ ଏ ଯୁଗରେ ଉପଲବ୍ଧି ହୋଇନାହିଁ । ଏଣୁ ଆସନ୍ତୁ ଏବେ ଜାତକ ପୋଡ଼ା ଅଭିଯାନରେ ବାହାରିବୁ ।

ଆପଣ ପଚାରିବେ, ବ୍ରାହ୍ମଣଙ୍କ ସିନା ପଇତା ଅଡ଼ୁଆ ହେଲା ବୋଲି ସେମାନେ ପଇତା ଛିଣ୍ଡାଇଲେ, ଜାତକ ତମର କି ଅଡ଼ୁଆ କଲା ଯେ ତା ଉପରେ ଏତେ ରାଗ ? ମାର ମାର ଭଣ୍ଡାରୀଆକୁ ମାର, କିହୋ କାହିଁକି ? ଜାତକ ତମର କି ରଣ୍ଡି ଖାଇଲା ଯେ ତମେ ତା ଉପରେ ଖପା ? ଆଚ୍ଛା ତମ ଜାତକ ଯଦି ଭଲ ଫଳ ଦେଉନି; ତେବେ ସେଇଟା ଭୁଲ ହୋଇଥିବ, ନ ହେଲେ ତାକୁ ଭଲ ଜ୍ୟୋତିଷ ଦେଖି ନ ଥିବେ । ତା ବୋଲି ଜାତକ ପରମ୍ପରା ଆମ "ହିନ୍ଦୁ" ପରମ୍ପରାର ଗୋଟିଏ ମସ୍ତବଡ଼ ମାନଦଣ୍ଡ । ତାକୁ ତମେ ପୋଡ଼ିବାକୁ ଯାଉଛ କାହିଁକି ?

କି ହୋ ଜାତକ ନ ଥିଲେ ବର କନିଆ ଯୋଡ଼ା ଯୋଡ଼ି ହୋଇପାରିବ ନାହିଁ । ଜାତକ ନଥିଲେ ଖବର କାଗଜ ତଥା ପତ୍ର ପତ୍ରିକାରେ ବାହାରୁଥିବା

ରାଶିଫଳ ବେକାର ହୋଇଯିବ, ଜାତକ ବିନା ଆମର ଭୂତ, ବର୍ତ୍ତମାନ ଓ ଭବିଷ୍ୟତ ଜାଣି ହେବ ନାହିଁ । ଜାତକକୁ ପେଷାକରି ଯିଏ ବଞ୍ଚିଛନ୍ତି ସେମାନେ ଯଦି ଜାତକ ପୋଡ଼ା କଥା ଶୁଣିବେ ସଙ୍ଗେ ସଙ୍ଗେ 'ହାର୍ଟଫେଲ' ମାନେ ତାଙ୍କର ହୃତ୍‌ଯନ୍ତ୍ର କ୍ରିୟା ବନ୍ଦ ହୋଇଯିବ ।

କଥାରେ ଅଛି କର-କପାଳ-କୋଷ୍ଠି । କପାଳରେ କଣ ଲେଖାଅଛି ଆମେ ଚର୍ମ ଚକ୍ଷୁରେ ଦେଖି ପାରୁନେ । ଏଣୁ କର ଆଉ କୋଷ୍ଠିକୁ ଭରସା ନ କରି ଆମର ଗତ୍ୟନ୍ତର ନାହିଁ । ସବୁ ମାଙ୍ଗଳିକ କାର୍ଯ୍ୟରେ ଜାତକର ଆବଶ୍ୟକତା ସମସ୍ତେ ଉପଲବ୍ଧି କରୁଛନ୍ତି । ଯାହାର ଜାତକ ନାହିଁ, ଗୋସେଇଁ ମାନେ ଚଟାପଟ ତାର ନାମରୁ ରାଶି ନକ୍ଷତ୍ର ଠିକ୍ କରି ଦେଉଛନ୍ତି । ବସ୍ତାଖିବେ ସୂତ୍ରଂ ଉଦ୍ୟାତ ପରି ଏହା କାମ ଚଳାଇ ଦେଉଛି । ଅଁପଣ ଦେଖନ୍ତୁ ଆଜିକାଲି ଆମ ଦେଶରେ ଶିକ୍ଷିତଙ୍କ ସଂଖ୍ୟା ଯେତେ ବଢ଼ୁଛି, ଜାତକ ସେତେ ଅଧିକ ସଂଖ୍ୟାରେ ବ୍ୟାପକ ହେଉଛି । ତେଣୁ ସତେ ଯେପରି ଶିକ୍ଷିତଙ୍କ ସଂଖ୍ୟା ବଢ଼ିବା ସଂଗେ ସଂଗେ ଜାତକ ସଂଖ୍ୟା ଆମ ଦେଶରେ ହୁ ହୁ ହୋଇ ବଢ଼ୁଛି ଜାତକ ପାଇଁ ମଣିଷର କାହିଁକି ଏଇ ଦୁର୍ବଳତା, ତାହା ଶିକ୍ଷିତ ଲୋକେ ହିଁ ଜାଣିଥିବେ । ସେ ଯାହାହେଉ ଜାତକ ଯେତେବେଳେ ଆମ ସମାଜର ଗଣ୍ଠି ମଧ୍ୟରେ ମଞ୍ଜ ହୋଇ ରହିଯାଇଛି, ତାକୁ ପୋଡ଼ିବା ମାନେ ସମାଜକୁ ନଷ୍ଟ କରିଦେବା ନୁହେଁକି ?

ପାଠକେ ତ ବିଚାରକ, ସେମାନେ ବିଚାର କରନ୍ତୁ । ଜାତକ ସପକ୍ଷରେ ଏତେ କଥାତ ଶୁଣିଲେ । ଆର ପକ୍ଷର ଓକିଲ କଣ ଜବାବ ସୁଆଲ କରୁଛନ୍ତି ଶୁଣନ୍ତୁ । ଜାତକ ବିବାହ ବଜାରରେ ଏକ କଳଙ୍କ । କେମିତି ? ଆଚ୍ଛା ଶୁଣନ୍ତୁ ।

ପ୍ରଥମେ ବିବାହ ବେଳେ ବରକନ୍ୟାଙ୍କ ଜାତକ ମେଳକ ବିଷୟ ଦେଖାଯାଉ । ବିବାହ ଦଶମେଳକରେ ତିନିଟା ସାଧାରଣ ତଥା ପ୍ରଧାନ ବିଷୟ ହେଲା ନାଗନାଡ଼ୀ, ଗଣ ଗଣନା ଆଉ ରାଜଯୋଟକ । ନାଗନାଡ଼ୀ ଦୋଷରେ ବରକନ୍ୟା ମଧ୍ୟରେ କଳହ, ବୈଧବ୍ୟ ଯୋଗ, କଳତ୍ର ଦୋଷ ଆଦି ରହିବି ବୋଲି ପଣ୍ଡିତମାନେ କହନ୍ତି । ମାତ୍ର ସେଇ ପଣ୍ଡିତ ମାନେ ଭଲ ଭାବେ ଜାଣନ୍ତି ସେ ନାଗନାଡ଼ୀ ଦୁଇ ପ୍ରକାର । ଗୋଟିଏ ନାଗନାଡ଼ୀ ପଦ୍ଧତିରେ ୨୭ଟି ନକ୍ଷତ୍ରର ସଂଖ୍ୟା ଏକ, ଦୁଇ, ତିନି, ଚାରି, ପାଞ୍ଚ, ଛଅ ଏମିତି ଲେଖା

ହୋଇଛି । ଆଉ ଗୋଟିଏ ପଦ୍ଧତିରେ ଏହା ସଂଖ୍ୟା କ୍ରମ ୪, ୫, ୬, ୭; ୮, ୯ ରୁ ଆରମ୍ଭ ହୋଇ ଶେଷକୁ ୧, ୨, ୩ ରଖାଯାଇଛି । ଏହା ଫଳରେ କାହାର ଯାତକ ଯୋଡ଼ ଯଦି ହେଉ ନ ଥାଏ, ଗଣନାକାର ମାନେ ଏହି ଭିନ୍ନ ମତ ଗ୍ରହଣ କରିଥାନ୍ତି । ଏଇଟା ଠକାମୀର ସୁଗମ ଉପାୟ ।

ତା ପରେ ଗଣ ଗଣନାକୁ ଆସନ୍ତୁ । ଗଣ ଗଣନା ଅନୁସାରେ ଦେବତା-ନର କିମ୍ବା ସମଗଣ ହେଲେ ଶୁଭପ୍ରଦ ବୋଲି ଜ୍ୟୋତିଷି ମାନେ କହନ୍ତି । ସେମାନଙ୍କ ମତରେ ନର-ରକ୍ଷସରେ ଜଣକର ମୃତ୍ୟୁ ଏବଂ ଦେବତା-ରକ୍ଷସରେ କଳହ ଯୋଗ ରହିଛି । ମାତ୍ର ଏଇଠି ଗୋଟାଏ ପ୍ରଶ୍ନ ପଚାରିବା କଥା— ଆପଣମାନେ ନିଜ ନିଜ ଅନୁଭୂତିରୁ କହନ୍ତୁ ଯେ କେଉଁ ସ୍ୱାମୀ ସ୍ତ୍ରୀ କଳହ କରୁ ନାହାଁନ୍ତି, ଅର୍ଥାତ କାହା ଘରେ କଳହ କିମ୍ବା ମତାନ୍ତର ନାହିଁ ? ସେମାନେ ଦେବତା-ନର ହୁଅନ୍ତୁ କିମ୍ବା ସମଗଣ ହୁଅନ୍ତୁ ଘର ମାତ୍ରକେ କଳହ, କିହୋ ଦେଖକେ ଫାଙ୍କ ନଖକେ ବାଙ୍କ । ଆଉ ଯେତେବେଳେ ଭିନ୍ନ ପରିବେଶରୁ ଆସି ଦୁଇଟା ଜନ୍ତୁ ଏକାଠି ହେବେ କେତେ ଖାପ ଖୁଆଇ ଚଳିଲେ ମଧ୍ୟ କାହା ଘରେ ସ୍ୱାମୀ ସ୍ତ୍ରୀ ମଧ୍ୟରେ ଖଟ୍ ଖଟ୍ ନ ହେଉଛି କହିଲେ ?

ଆଉ ଯେଉଁ ଜ୍ୟୋତିଷ ମାନେ କହୁଛନ୍ତି ଯେ ନର-ରକ୍ଷସ ହେଲେ ହିଁ ବୈଧବ୍ୟ ଦୋଷ ଲାଗିବ । ମାତ୍ର ଯେଉଁ ମାନଙ୍କର ନର-ଦେବତା କିମ୍ବା ଦେବତା ନର କିମ୍ବା ସମଗଣ ହେଉଛି ସେମାନେ ବୈଧବ୍ୟ ଦୋଷର ଶିକାର ହେଉନାହାନ୍ତି ବୋଲି ଜ୍ୟୋତିଷମାନେ ପ୍ରମାଣ କରିଦେଇ ପାରିବେ କି ? ଯେଉଁ ବ୍ରାହ୍ମଣମାନେ ଏହି ମେଳକରେ ବେଶୀ ବିଶ୍ୱାସୀ ସେଇମାନଙ୍କ ଶାସନକୁ ଯାଇ ଦେଖନ୍ତୁ ବିଧବା ସଂଖ୍ୟା କେତେ ? କାର୍ତ୍ତିକ ମାସରେ ପୁରୀ ମଠିଆକୁ ଗଲେ ଏହାର ଛବି ଆପଣ ନିଜେ ଦେଖି ପାରିବେ ।

ରାଜଯୋଟକ କଥା ମଧ୍ୟ ସେହିପରି । ରାଜଯୋଟକ ପଡ଼ି ବିବାହ କରିଥିବା ବରକନ୍ୟାମାନେ କଳହ କଳତ୍ର କିମ୍ବା ବୈଧବ୍ୟ ଦୋଷରେ ପଡ଼ୁ ନଥିବା ନଜିର ନାହିଁ । ଏସବୁ ଶୁଣି ଜ୍ୟୋତିଷ ମାନେ ନିଶ୍ଚୟ କହିବେ ଯେ ଅମୁକ ଲୋକର ଜାତକଟା ଭୁଲ ତେଣୁ ଭୁଲ ଫଳ ଫଳିଲା । ଜାତକ ମେଳକର ଦୋଷ ହେବ କିଆଁ ? ଏଇଟା ଗାଲୁ ଭୁରୁଡ଼ି ଛଡ଼ା ଆଉ କିଛି ନୁହେଁ ବରଂ ନଜିର ବିବାହ ବଜାରରେ ଜାତକ ମେଳକ ନାମରେ ଖାଲି ମେଳକ

କାରୀମାନେ କାହିଁକି ବରପିତା ତଥା କନ୍ୟା ପିତା ନାନାପ୍ରକାର ଭଣ୍ଡାମୀର ଆଶ୍ରୟ ନେଉଥିବା ଢ଼େର ଢେର ପ୍ରମାଣ ଅଛି । ଜାତକ ମିଳାଇବା ପାଇଁ କେହି କେହି ଦିଟା ଅଲଗା ଜାତକ ତିଆରି କରୁଛନ୍ତି । ଆଉ କିଏ ଯଉତୁକ କମ ହେବା କଥା ନ କହି ଜାତକ ନ ପଡ଼ିବା ଆଳରେ ପ୍ରସଙ୍ଗ ଭାଙ୍ଗୁଛନ୍ତି । ଅବଶ୍ୟ ଯେଉଁଠି ବରକନ୍ୟାଙ୍କ ରୁଚିରୁ ଭାବରେ ବିବାହ ହେଉଛି ସେଇଠି ଜାତକ ନା ପାତକ । "ମେଆଁ ବିବି ରାଜି ତୋ କ୍ୟା କରେଗା କାଜୀ" ।

ଇଏତ ଗଲା ବିବାହ ବଜାର କଥା । ଆଜନ୍ତୁ ଅନ୍ୟ କ୍ଷେତ୍ରକୁ, ଜାତକ ଦ୍ୱାରା ଭୂତ ଭବିଷ୍ୟତ ଗଣନା ହୋଇ ପାରୁଛି ବୋଲି ଅନେକଙ୍କ ଧାରଣା । ଭୃଗୁ ସଂହିତା ପୋଥିରୁ କିମ୍ବା ଯେ କୌଣସି ଫଳିତ ଜ୍ୟୋତିଷ ବହିରୁ ଗଣନା କରି ଜ୍ୟୋତିଷମାନେ ଏକଥା କହୁଛନ୍ତି । କିନ୍ତୁ ଆମ ଦେଶର କେତେକ ବଡ଼ ଜ୍ୟୋତିଷଙ୍କ ବ୍ୟକ୍ତିଗତ ଜୀବନରୁ କେତୋଟି ଉଦାହରଣ ଶୁଣନ୍ତୁ । ମାନ୍ଦ୍ରାଜର ବିଶିଷ୍ଟ ଜ୍ୟୋତିଷ ବି:ଭି: ରମଣଙ୍କ ପୁତ୍ର ବି.ସୂର୍ଯ୍ୟପ୍ରକାଶ ରାଓ, ଯେ କି ନିଜେ ଜଣେ ବିଶିଷ୍ଟ ଫଳିତ ଜ୍ୟୋତିଷର ଗବେଷକ, ସେ ନିଜେ ବିମାନ ଦୁର୍ଘଟଣାରେ ପ୍ରାଣ ହରାଇଲେ । ଗତ ସେପ୍ଟେମ୍ବର ୫, ୧୯୮୨ ସନ୍‌ର ସ୍ୟାଗଜିନ ସଂଖ୍ୟାରେ ଡକ୍ଟର ନାରାୟଣ ଦତ୍ତ ଶ୍ରୀମାଳୀ ତାନ୍ତ୍ରିକ ଜ୍ୟୋତିଷଙ୍କ ଘରେ ଆୟକର ଅଫିସରଙ୍କ ଚଢ଼ାଉ ଏବଂ ୪୦ଲକ୍ଷ ଟଙ୍କାର ହିସାବ ବହିର୍ଭୂତ ସମ୍ପତ୍ତି ତଲବ ଆଉ ବହୁ ଗ୍ରାହକଙ୍କୁ ଠକି ଥିବା ଅକାଟ୍ୟ ପ୍ରମାଣ ପତ୍ର ସଂଗ୍ରହ ଘଟଣାରେ ଜ୍ୟୋତିଷ ଶାସ୍ତ୍ର ଉପରୁ ଆମର ଭରସା ଆପେ ଆପେ ଖସି ଆସିବାକୁ ବାଧ୍ୟ ହେଉଛି ।

ଏହା ବ୍ୟତୀତ ସହା ଘାଟରେ ବସୁଥିବା ଶୁକ ଜଉତିଷ ଆଉ ବିଡା ତିଳକଧାରୀ ଜଉତିଷ ଦିନେ ଦିନେ ଶୂନ୍ୟ ହସ୍ତରେ ଗୃହକୁ ଫେରୁ ନାହାନ୍ତି କି ? ସେମାନେ ଯଦି ଜାଣିପାରୁଛନ୍ତି ଆଜି କିଛି କାରବାର ନାହିଁ, ତେବେ ବଜାରକୁ ଆସୁଛନ୍ତି କାହିଁକି ? ତା ଛଡ଼ା ସେମାନେ ନିଜର ଭବିଷ୍ୟତ ଗଣନା କରି ସଠିକ କଥା ପ୍ରଥମେ କହନ୍ତୁ ଏବଂ ତାହା ପ୍ରମାଣିତ କରି ଅନ୍ୟ-ମାନଙ୍କର ଭାଗ୍ୟ ଗଣନା କରନ୍ତୁ । ଏପରି ଏକ ବାଜି କେଉଁ ଜ୍ୟୋତିଷ ଗ୍ରହଣ କରିବେ କି ?

ଜ୍ୟୋତିଷ ପାଖକୁ ଯେଉଁମାନେ ଯାଉଛନ୍ତି ସେମାନେ ସାଧାରଣତଃ ନିଜର କିଛି ଅସୁବିଧା ସମୟରେ ହିଁ ଯାଆନ୍ତି । ଏହି ମନସ୍ତତ୍ତ୍ୱଟି ଜ୍ୟୋତିଷ-

ମାନଙ୍କୁ ଠିକ ଜଣା । ତେଣୁ ଗରାଖ ଦେଖିଲାକ୍ଷଣି ସେମାନେ ଲମ୍ବା ଚୌଡ଼ା ଭାଷଣ ଆରମ୍ଭ କରି ଦିଅନ୍ତି—"ଆପଣଙ୍କର ବର୍ତ୍ତମାନ ବଡ ଖରାପ ସମୟ ପଡ଼ିଛି । ଯାହା ଗ୍ରହୁଁ ଛନ୍ତି କରିପାରୁ ନାହାନ୍ତି । ନିଜର ନିକଟତମ ଲୋକ କିମ୍ବା ସମ୍ପର୍କୀୟ ଲୋକେ ଶତ୍ରୁତା ଆଚରଣ କରୁଛନ୍ତି । ଧନରେ ହାନୀ, କଳତ୍ରରେ ପୀଡ଼ା, ସ୍ତ୍ରୀ ପୀଡ଼ା ଆଦି ଲାଗି ରହିଛି" ଇତ୍ୟାଦି ସବୁ ଜ୍ୟୋତିଷ ତାଙ୍କର ଅପୂର୍ବ କଥନ ଶୈଳୀରେ ଭଣା ଅଧିକେ ଏହାହିଁ କହିଥାନ୍ତି । ଆଉ ପ୍ରାୟଶ୍ଚିତ ମଧ୍ୟ ମୋଟାମୋଟି ଏହିପରି— ମହାମୃତ୍ୟୁଞ୍ଜୟ ମନ୍ତ୍ର ଜପକର, ଆମିଷ ଛାଡ଼ିଦିଅ, ଶିବପୂଜା କର, ବିଷ୍ଣୁ ସହସ୍ରନାମ ଜପ, ବ୍ରାହ୍ମଣ ଭୋଜନ ଦିଅ ଇତ୍ୟାଦି । ଏକଥା ସମସ୍ତେ ଜାଣନ୍ତି । ଆଉ ଜ୍ୟୋତିଷେ ଅଧିକା କଣ କହିବେ ?

ତାପରେ ଗୋଚର ଫଳକୁ ଆସନ୍ତୁ । ଗୋଚର ଫଳରେ ବିଶେଷ ଗୁରୁତ୍ୱ ଦିଆଯାଏ ବୃହସ୍ପତି ଚଳନକୁ । ନୂଆ ପାଞ୍ଜି ପ୍ରକାଶ ପାଇବା ସଙ୍ଗେ ସଙ୍ଗେ ପୁରୋହିତ ମା'ନେ କାଖରେ ପାଞ୍ଜିବିଡ଼ା ଜାକି ସବୁ ଯଜମାନଙ୍କ ଚଳନଫଳ,ବର୍ଷ ଫଳ, ଫସଲ ଆଦାୟ, ବର୍ଷା ଶସ୍ୟଦର ଇତ୍ୟାଦି ବୁଲି ବୁଲି କହିବା ସଙ୍ଗେ ସଙ୍ଗେ ପଞ୍ଚବେଳକୁ ବେଶ ବଡ଼ ଗଣ୍ଠିଲିଟିଏ ଆଉ ମୋଟା ଅଣ୍ଟାଗୁଞ୍ଜା ସହ ଘରକୁ ଫେରନ୍ତି । ମାତ୍ର ଆପଣ ଯଦି ବୃହସ୍ପତି ଚଳନକୁ ନିଠେଇ କରି ଦେଖିବେ ସେଥିରେ ପରସ୍ପର ବିରୋଧୀ କଥା ଲେଖା ହୋଇଛି । ରାଶି ଅନୁସାରେ ଗୋଟାଏ ଫଳ, ନକ୍ଷତ୍ର ଅନୁସାରେ ଆଉ ଗୋଟାଏ ଫଳ । ପୁଣି ଜନ୍ମରାଶିକୁ ବୃହସ୍ପତି ସ୍ଥିତି ଅନୁସାରେ 'ଜୀବେ ଦ୍ୱିତୀୟେ ଧନ ଧାନ୍ୟ ଭୋଗୀ' ଇତ୍ୟାଦି ଶ୍ଳୋକରେ ଗୋଟାଏ ଫଳ, ବୃହସ୍ପତି ଚଳନରେ ରାଶିରେ ଚନ୍ଦ୍ର ଶୁଭାଶୁଭ ନେଇ ଆଉ ଗୋଟାଏ ଫଳ । ଏଇଥିରୁ କେଉଁଟି ଠିକ୍, କେଉଁଟି ଭୁଲ ଜାଣିବା କାଠିକର ପାଠ । ଏଥିରୁ କିଛି ଗୋଟାଏ ସାରାଂଶ ବାହାରେ ନାହିଁ । ତେଣୁ ପାଞ୍ଜିକି ଦେଖି ଚଳନ ଫଳ ଜାଣିବା ଗୋଟାଏ ଗୋଲକ ଧନ୍ଦା !

ଏ ସବୁ ଆମେ ଜାଣୁଛେ । ଅଙ୍ଗେ ନିଭେଇଛେ, ତଥାପି ଜ୍ୟୋତିଷ ଶାସ୍ତ୍ର ପ୍ରତି ଆମର ଦୁର୍ବଳତା ଅସୀମ । ଏହାର ମୂଳରେ ଅଛି ଆମର ଭବିଷ୍ୟତ ବିଷୟରେ ଜାଣିବା ପାଇଁ ଆଗ୍ରହ । ଆବେଗ ଆଉ ଉତ୍‌କଣ୍ଠା ।

ଏଇ ଦୁର୍ବଳତାର ସୁଯୋଗ ନେଉଛନ୍ତି ଜ୍ୟୋତିଷମାନେ । ମାତ୍ର ବାସ୍ତବରେ କୁହାଯାଇଛି—

ଜନମ ମରଣ ବରଷା
କେବେ କହି ନପାରନ୍ତି ପୁରୁଷା ।”

ଏଣୁ ଜାତକ ରଖିବେ କାହିଁକି ? ଏମିତି ଗୋଳକଧନ୍ଦାରେ ପଡ଼ିବେ କାହିଁକି ? “ମନ୍ଦ ମାଇପର ଯିବ ପରି, ଦେବଙ୍କ ସଙ୍ଗ କିମ୍ବା କଳି,” ଏଥି ସକାଶୁଁ ଜାତକ ସବୁ ପୋଡ଼ନ୍ତୁ । ସର୍ବମଙ୍ଗଳ ଜଗନ୍ନାଥ କହି ତାହାଘର ଉଠାନ୍ତୁ । ଦେଖିବେ ସବୁ ଠିକ ହୋଇଯିବ । ଏହା କହୁଛୁ ବୋଲି ଆମ ଉପରେ ଜ୍ୟୋତିଷମାନଙ୍କ ଗାଳି ଗୁଲଜ ଆମ ପାଖକୁ ଆସୁ; ଆମେ ତାକୁ ଚନ୍ଦନ ଭଳି ଲେପି ଆନନ୍ଦ ଉପଲବ୍ଧି କରିବୁ ।



ଶ୍ରୀ ପ୍ରସନ୍ନ କୁମାର ବରାଳ

# ଶ୍ରୀ ଜଗନ୍ନାଥ : ଆଧୁନିକ ଓଡ଼ିଆ କବିତାରେ ରୂପାଂତର

ମଣିଷ ମନରେ ସୃଷ୍ଟି ହୋଇଥିବା ଧର୍ମର ପ୍ରାବଲ୍ୟରୁ ସାହିତ୍ୟର ସୃଷ୍ଟି । ତେଣୁ ସାହିତ୍ୟ ସୃଷ୍ଟିର ପ୍ରାକ୍ କାଳରୁ ଅଦ୍ୟାବଧି ଧର୍ମ, ସାହିତ୍ୟ ରାଜ୍ୟରେ ତାର ଅପ୍ରସନ୍ନ ପ୍ରଭାବ ବିସ୍ତାର କରି ଆସିଛି ଓ ଭବିଷ୍ୟତରେ କରିବ ମଧ୍ୟ ଯଦି । କେବେ ସାହିତ୍ୟ ଠାରୁ ଧର୍ମ ବିଚ୍ଛିନ୍ନ ହୋଇଯାଏ ତେବେ ହୁଏତ ସେତେବେଳେ ମଣିଷ ଓ ସାହିତ୍ୟ ସୃଷ୍ଟି ଦ୍ୱିଧା ହୋଇ ଯାଇଥିବେ । ତେବେ ସେ ଯାହାହେଉ ଏଠାରେ ଆଧୁନିକ ଓଡ଼ିଆ କବିତାରେ ଶ୍ରୀ ଜଗନ୍ନାଥ ଚେତନାର କିପରି କ୍ରମ ରୂପାନ୍ତର ଘଟିଛି ତା'ର ସମ୍ୟକ୍ ବିଶ୍ଳେଷଣ କରାଯାଇପାରେ ।

ସାଂପ୍ରତିକ ସମୟକ୍ରମେ ଯେତେବେଶୀ ବୈଷୟିକ ଓ ବୈଜ୍ଞାନିକ ପ୍ରଗତିରେ ଅନ୍ତସ୍ଥ ହୋଇ ଉଠୁଛି, ମଣିଷର ଚିନ୍ତା ଓ ଚେତନାରେ ସେତେ ବେଶୀ ଦ୍ୱନ୍ଦ୍ୱ, ଗ୍ଳାନି, ଯନ୍ତ୍ରଣାବୋଧ, ଏକାକୀତ୍ୱ ବୋଧ ଓ ସର୍ବୋପରି ଜୀବନ ପ୍ରତି ନାସ୍ତି ସୂଚକ ମନୋବୃତ୍ତି ଜାତ ହେଉଥିବାର ଲକ୍ଷ୍ୟ କରାଯାଉଛି । ଆଜିର ମଣିଷ ନିଜକୁ ବିଶେଷତଃ ଅତ୍ୟାଧୁନିକ ରୂପେ ବିବେଚନା କରି ଧର୍ମକୁ ଏକ ଅବାନ୍ତର ବସ୍ତୁ ବୋଲି ଘୋଷଣା କରୁଥିଲେ ବି ପରବର୍ତ୍ତୀ ମୁହୂର୍ତ୍ତରେ ତାର ଅନ୍ତରର ଗଭୀରତମ ପ୍ରଦେଶରୁ ଦୁଇ ହାତ ଯୋଡ଼ି ହୋଇ ଯାଉଛି, ମସ୍ତକ ନତ ହୋଇ ଯାଉଛି ସେଇ ଦାରୁଭୂତ ମୁରାରୀଙ୍କ ଉଦ୍ଦେଶ୍ୟରେ । ସେତେବେଳେ ତା ମନରେ ନା'ରହିଛି ପରଂପରା ଜନିତ ଦୁଃଖ ଗ୍ଲାନି ନା' ରହିଛି ଆତ୍ମକେନ୍ଦ୍ରିକ ଅହଂବୋଧ । ଏ ଭୂମି ଶ୍ରୀଜଗନ୍ନାଥଙ୍କର ଭୂମି । ଓଡ଼ିଆ ମାଟିର ସର୍ବଶ୍ରେଷ୍ଠ ପରିଚୟ ବୋଲି ଯଦି କିଛି ଥାଏ ତେବେ ତାହା ହେଉଛି ଚକାଡୋଳା ଶ୍ରୀ ଜଗନ୍ନାଥଙ୍କୁ ନେଇ । ଏଦେଶରେ ଅନେକ ଶାସକ ଶାସନ କରି ଯାଇଥିଲେ ବି ଅନେକ ଧର୍ମଧାରା ପ୍ରବାହିତ ହୋଇ ଯାଇଥିଲେ ବି କୌଣସି ଶାସକ ବା କୌଣସି ଧର୍ମ ଏ ଦାରୁ ଦେବତାଙ୍କୁ ବଦଳେଇ ପାରି-

ନାହିଁ । ବରଂ ସମସ୍ତେ ଦାରୁ ଦେବତାଂକ ନିକଟରେ ନିଜକୁ ଢାଳେଇ ଦେଇ ଯାଇଛନ୍ତି । ଶବରମାନଙ୍କ ସମୟରେ ଯେଉଁ ଦାରୁ ରୂପେ ସେ ପୂଜା ପାଇ ଆସୁଥିଲେ କାଳକ୍ରମେ ଆଜି ବି ସେଇ ଦାରୁ ରୂପରେ ସେ ପୂଜିତ ହେଉଛନ୍ତି । ଏ ଦେବତା ଗୋଟିଏ ଦିନର ନୁହନ୍ତି କି ଗୋଟିଏ ଯୁଗର ନୁହନ୍ତି ଏ ଯୁଗ ଯୁଗର । ଆଜିର ନୁହନ୍ତି, ଅନନ୍ତର । ଶବର ବିଶ୍ୱାବସୁଙ୍କ ଠାରୁ ଆର୍ଯ୍ୟ ଇନ୍ଦ୍ରଦ୍ୟୁମ୍ନ ବୌଦ୍ଧଇନ୍ଦ୍ରଭୂତି, ଶୈବ ଶଙ୍କରାଚାର୍ଯ୍ୟ, ପାଞ୍ଚରାତ୍ରିକ ରାମାନୁଜ, ଶୁଦ୍ଧାଭକ୍ତି ବାଦୀ ଶ୍ରୀ ଚୈତନ୍ୟ, ଶୂନ୍ୟବାଦୀ ବଳରାମ, ଜଗନ୍ନାଥ, ଅଚ୍ୟୁତାନନ୍ଦ ଓ ଶିଖଗୁରୁ ନାନକ ଏବଂ ଇସଲାମ ଧର୍ମୀ ସାଲବେଗ ତଥା ଯବନ ହରିଦାସଙ୍କ ପର୍ଯ୍ୟନ୍ତ, ସେ ସମସ୍ତଙ୍କର—ସମସ୍ତ ବିଶ୍ୱାସ ଓ ଧର୍ମ ଧାରଣାର । ଓଡ଼ିଆ ଜାତି ଜଗନ୍ନାଥଙ୍କୁ ନେଇ ଯେମିତି ଗର୍ବ କରେ ଓଡ଼ିଆ ସାହିତ୍ୟକ ଜଗନ୍ନାଥଙ୍କୁ ନେଇ ତଦନୁରୂପ ଗର୍ବ କରେ । ଓଡ଼ିଆ ସାହିତ୍ୟରେ କେତେବେଳେ ତାଂକୁ ସ୍ୱୟଂଭଗବାନ ଭାବରେ ତ କେତେବେଳେ ଧୂଳିମାଟିର ସାଧାରଣ ମଣିଷଟିଏ ଭାବରେ ବର୍ଣ୍ଣନା କରାଯାଇଛି । କେତେବେଳେ ସିଧାସଳଖ ସ୍ତୁତି ତ କେତେବେଳେ ନିନ୍ଦାଛଳରେ ସ୍ତୁତି । ପୁଣି କେତେବେଳେ ଭାବବିହ୍ୱଳ ହୋଇ କବି ନିଜକୁ ଢାଳେଇ ଦେଇଛି କାଳିଆର ଚକାଡୋଳା ଭିତରେ । ଶେଷରେ ତାର ଅହଂଭାବ ଦୂର ହୋଇଯାଇଛି ଏବଂ ପାଇଛି ଅପରିସୀମ ଜୀବନ୍ମୁକ୍ତିର ବାଟ । ସେଇଥି ପାଇଁ ମାଟିର ମହାକବି ସାରଳାଦାସ ଉଦାର କଣ୍ଠରେ ଘୋଷଣା କଲେ—

"ମନ ବଚନ କର୍ମେ ବେ ମୋର ଆନ ଯୋହୁ ।
ଶ୍ରୀପୁରୁଷୋତ୍ତମେ ଅଂଶ୍ରେ କରି ମୋହରି ଦିନ ଯାଉ ।।"

ଉକ୍ତ ଘୋଷଣାରେ କବିଙ୍କର କପଟତା ନାହିଁ, କବିତ୍ୱର ଅହଂକାର ନାହିଁ ବା ପାଣ୍ଡିତ୍ୟର ଆସ୍ଫାଳନ ବି ନାହିଁ, ମାତ୍ର ଅଛି କବି ଚିତ୍ତର ସ୍ୱାଭାବିକ ଅଭିବ୍ୟକ୍ତି ।

ଆଧୁନିକ କବିର ଚିନ୍ତାଧାରାରେ ବି ଜଗନ୍ନାଥ କେନ୍ଦ୍ରିକ ଭାବ ଚେତନା ଅନୁପ୍ରବେଶ କରିଛି ସେଇ ପ୍ରାଚୀନତାର ଭିତ୍ତିଭୂମି ଉପରେ ଆଧୁନିକତାର ପ୍ରଲେପ ଦେଇ । ଅବଶ୍ୟ ଆଧୁନିକ କବିର ଦୃଷ୍ଟିକୋଣ ପ୍ରାଚୀନ କବିମାନଙ୍କର ଦୃଷ୍ଟିକୋଣଠାରୁ ଢେର ଫରକ ହୋଇ ଯାଇଛି । ଏହାର ମୂଳରେ ଦୁଇଟି ବିଶ୍ୱଯୁଦ୍ଧ ଓ ବିଜ୍ଞାନର ଅଗ୍ରଗତି ହିଁ ଦାୟୀ, ମଣିଷ ଯେତେବେଳେ ନିଜକୁ ଚିହ୍ନି ପାରୁନି, ନିଜ ବାପା, ମା, ସ୍ତ୍ରୀ, ଭାଇ, ଭଉଣୀ ନିଜଠାରୁ ଦୂରେଇ ଯାଉ-

ଛନ୍ତି, ସେତେବେଳେ ତାର ଚିନ୍ତାଧାର ବି ବଦଳିବା ସ୍ୱାଭାବିକ । କେବଳ ସେତିକି ନୁହେଁ ସେତେବେଳେ ମଣିଷ ସୀମିତ ପରିବେଶ ମଧ୍ୟରେ ସ୍ୱଳ୍ପ-ପରିମିତ ଅଭାବ ଅସୁବିଧାରେ ନିଜକୁ ଚଳେଇ ନେଇ ପାରୁଥିଲା, ମାତ୍ର ଏବେ ମଣିଷର ପରିବେଶ ଓ ପରିସୀମା ଏତେ ବୃଦ୍ଧି ପାଇଯାଇଛି ତାହା ଫଳରେ କି ବ୍ୟକ୍ତି କେନ୍ଦ୍ରିକ ଓ ସ୍ୱାର୍ଥ ଭିତ୍ତିକ ହେବା ଛଡ଼ା ତା ପାଇଁ ଉପାୟାନ୍ତର ନାହିଁ । ସବୁ କ୍ଷେତ୍ରରେ ଆଜି ତାକୁ ଯୁକ୍ତି ଓ ପରୀକ୍ଷା ଉପରେ ନିର୍ଭର କରିବାକୁ ପଡ଼ୁଛି । ଆଜିର କବି ଆଉ କଳ୍ପନା ପ୍ରବଣତା ଉପରେ ବିଶ୍ୱାସ କରିବାକୁ ପ୍ରସ୍ତୁତ ନୁହେଁ ତେଣୁ ସେ ବାସ୍ତବବାଦୀ ଦୃଷ୍ଟିକୋଣରୁ ସବୁ କଥାକୁ ବିଗ୍ଭର କରୁଛି । ଏହି ପରିପ୍ରେକ୍ଷୀରେ କବି ଶ୍ରୀ କାଳିନ୍ଦୀ ଚରଣ ପାଣିଗ୍ରାହୀଙ୍କ କବିତାକୁ ଆଲୋଚନା କରାଯାଇ ପାରେ । ସାମ୍ୟବାଦୀ ଦୃଷ୍ଟି-କୋଣରୁ କବି ଦର୍ଶାଇବାକୁ ଚାହାନ୍ତି ଯେ ସମାଜରେ ଯଦି ଲୋକେ ଦୁଃଖ କଷ୍ଟ ଓ ନିର୍ଯାତନା ଭୋଗିଲେ ତେବେ ଆଉ କି ଠାକୁର ଅଛନ୍ତି ? ତାହା କେବଳ ପାଷାଣ ମୂର୍ତ୍ତି ବ୍ୟତୀତ ଅନ୍ୟ କିଛି ନୁହେଁ । ତେଣୁ ଶ୍ରୀ ପାଣିଗ୍ରାହୀ 'ପୁରୀ ମନ୍ଦିର' କବିତାରେ ଶ୍ରୀ ଜଗନ୍ନାଥଙ୍କୁ ପ୍ରଶ୍ନ କରିଛନ୍ତି—

"କାଷ୍ଠ ପାଷାଣେ ଗଠିତ ହେ
ନିର୍ଜୀବ ଦେବତା ମୂରତି
ଯବନର ହସ୍ତେ ବହିରୂପ
ଷଡ଼ୈଶ୍ୱର୍ଯ୍ୟ କରୁଛି ବିଦ୍ରୂପ ?
ଅନ୍ତର ବୁହାରୀ, କ୍ଷଣକି ତାହାରି
ଶୂନ୍ୟ ପ୍ରାଣ, ହେ ପାଷାଣ ।"

ବାସ୍ତବିକ ଉକ୍ତ ପଂକ୍ତିରେ ଆଧୁନିକ କବିମନର ବାସ୍ତବବାଦୀ ଚିନ୍ତା-ଧାରା ପ୍ରକାଶ ପାଇଛି ।

ସାମ୍ୟବାଦୀ କାବ୍ୟ ଚେତନାର ଅନ୍ୟତମ ଅଗ୍ରଜ କବି ଶ୍ରୀ ସଚ୍ଚିଦାନନ୍ଦ ରାଉତରାୟଙ୍କ ଦୃଷ୍ଟିରେ ଧର୍ମ 'ଅଫିମର ନିଶା' ପରି ହୋଇଥିଲେ ବି 'ସ୍ୱଗତ' କବିତାରେ ଉଲ୍ଲେଖ କରିଛନ୍ତି—

"ତେଣୁ ମୁଁ ତ ଭଗ୍ନଜାନୁ, ଖସିପଡ଼େ ମୋର ସଚ୍ଛଫଳ
ଉଠାଇ ପାରେନା ଆଉ ଗାଣ୍ଡିବ ଯେ ହାତ ଥର ଥର

× × × × × ×

ଟାଣିନିଅ ତୁମ ମାୟାତନ୍ତୁ

ତୁମେ ପରା ଆହେ ଉଦଧ. ମୂରତି
ବସିଚ ଆସନେ ଧର୍ମ କାରତି
ତୁମେ ପର ଚିର ଶାନ୍ତି ପ୍ରତୀତି
ନୀଳ ଚକ୍ରରେ ବାନ୍ଧିଛ ଚନାତି
ଲିଭିଇବ ନିଅାଁ କିଏ ହେ ?
କହ ମହାପ୍ରଭୁ କହହେ....।"

ଏବଂ 'ପତିତପାବନ' ଶୀର୍ଷକ କବିତାରେ ଲେଖିଛନ୍ତି—

"ତଥାପିତ ନୀଳ ଚକ୍ରବାଳେ ବାନା ଉଡେ
ଯଥା ଏକ ରକ୍ତକାୟ ହଂସ ।"

ସମସ୍ତ ନାହିଁ ନାହିଁ ଭବ ସମ୍ଭେବି ଏଇ କେତୋଟି ପଂକ୍ତିରୁ କବିଙ୍କର ଜଗନ୍ନାଥଙ୍କ ପ୍ରତି ଯେଉଁ ସମ୍ବୋଧନ ଭାବ ପ୍ରକାଶ ପାଉଛି, ତାହା ପାଠକ ନିକଟରେ ଉହ୍ୟ ହୋଇ ରହି ପାରୁଛି କି ? ସାଂପ୍ରତିକ ସମାଜରେ ଈଶ୍ୱର ବିଶ୍ୱାସ ଏକ ପ୍ରହସନରେ ପରିଣତ ହୋଇଛି ଓ ଈଶ୍ୱରଙ୍କ ନାଁରେ ଭଣ୍ଡାମି ଚାଲିଛି ତେଣୁ ସେ ଜଗନ୍ନାଥଙ୍କୁ ଏକ ଜଣ.ଣ କବିତାରେ ଲେଖିଛନ୍ତି—

"ଶରଧା ବାଲିତ କିଆରି କିଆରି ଯେଠିରେ ପର୍ଦ୍ଦି ସିଆ
କିଏ ସେ କଲାଣି ଶଙ୍ଖ ମଲମଲ....

କେବଳ ଏତିକି ନୁହେଁ କବି ଯେତେବେଳେ ନିଜକୁ ଜନସାଧାରଣଙ୍କ ସହିତ ଜଡ଼େଇ ଦେଇଛନ୍ତି ସେତେବେଳେ ଅନ୍ୟର ଈର୍ଷା, ପରଶ୍ରୀକାତରତାର ଶିକାର ହୋଇଛନ୍ତି ତେଣୁ ସେ ପୁନଶ୍ଚ ଜଗନ୍ନାଥଙ୍କୁ ଏକ ଜଣାଣ କବିତାରେ ପ୍ରଶ୍ନ ପଚାରିଛନ୍ତି—

କହ ଚକାଡୋଳା ଦେଖି କି ଦେଖନା
କହ ହେ ମାଦଳ, ହେ କାଳିଆ କହ୍ନା
ନୀଳ ଶଇଳର ମାତଙ୍ଗ ତୁମେନା
ଯାଇଚ ଠେକୁଆ ପାଲଟି ।"

ଏବଂ ପୁଣି କହିଛନ୍ତି,

'ଚୁରିଆଡେ ଖାଲି ହିତ, ବାଡ, ହାଡ଼ କହ୍ନୁ କଟଳ ହେବୁହେ ।"

ସତରେ କେତେ ହୃଦୟସ୍ପର୍ଶି ହୋଇ ଉଠିନ୍ତି କବିଙ୍କର ଭାବ । ଏଭାବ ଅତ ଅଂତରଙ୍ଗତାରୁ ହିଁ ଉଦ୍ଭବ ।

ଅଧ୍ୟାପକ ବ୍ରଜକିଶୋର ରାୟ ଓଡ଼ିଆ ସାହିତ୍ୟରେ ଜଗନ୍ନାଥ ସଂସ୍କୃତିର ପ୍ରଭାବ ଦର୍ଶାଇବାକୁ ଯାଇ ପ୍ରଗତିବାଦୀ କବି ଅନନ୍ତ ପଟ୍ଟନାୟକଙ୍କ କବିତା ଉଦ୍ଧାର କରି କହିଛନ୍ତି, "ମାର୍କସବାଦୀ କବି ଅନନ୍ତ ପଟ୍ଟନାୟକ ସାଂପ୍ରତିକ ମଣିଷର ଯନ୍ତ୍ରଣାକ୍ତ ଓ ମୁମୂର୍ଷୁ ପ୍ରାଣରେ ଜଗନ୍ନାଥଙ୍କର ବୀଜ ଓଁକାର ସୃଷ୍ଟି କରି ନୂତନ ଚେତନା ପ୍ରକାଶିଲେ—

ମୁଁ କିରେ ଖୋଜୁନି ମର୍ମର ଖଣି
ମରୁ ଓଁକାରେ ,ତାର' ଜୀବନରେ କେତେ ଝୁମୁଥିଲି ଜ୍ୱାଳା ?"

ଆଜିର କବି ଆଧୁନିକ ହେଲେ ବି ପରଂପରା ଉପରୁ ତାର ବିଶ୍ୱାସ ତୁଟେଇ ପାରୁନାହିଁ । ସେ ନିଜକୁ ସମର୍ପି ଦେଉଛି ଜଗନ୍ନାଥଙ୍କ ନିକଟରେ । ଏହାର ପ୍ରମାଣ ହେଉଛି କବି ଗୁରୁପ୍ରସାଦଙ୍କ କବିତା—

"ମହାପ୍ରଭୁ ମୁକ୍ତିଦିଅ
ଏହି ଯାତ୍ରା ଶୁଭ ହେଉ ମୋର ଶେଷ ଯାତ୍ରା
ଏ ଦେହରୁ ତୁମର ସଂହାର ଦେଇଁ
ହେଉ ବହୁତ କ୍ଳାନ୍ତି ପୁନରୁକ୍ତି ଏ ଆତ୍ମାର
ଆଉ ତୁମ ଦୟା କ୍ଷମା କାରୁଣ୍ୟର ସମୁଦ୍ର କୂଳରେ
ମହାପ୍ରଭୁ ମେଇ ଜଗନ୍ନାଥ ।"

ଆଧୁନିକ ଜୀବନ ମଣିଷର ପିଠିରେ ଯେଉଁ ତିକ୍ତ ଅନୁଭୂତି, ଅଭିଜ୍ଞତା ଓ ଅସହାୟତାର ବୋଝ ଲଦି ଦେଉଛି ଏଥିରୁ ମୁକ୍ତିର ବାଟ ନାହିଁ ଓ ଈଶ୍ୱରଙ୍କ ଆଡ଼କୁ ଆଖିବୁଜି ଦେଲେବି ଅନ୍ଧାର । ତଳକୁ ଆଗେଇଲେ ବି ମୁକ୍ତି ନାହିଁ, ରହିଛି ବନ୍ଧନ । ତେଣୁ ଆଧୁନିକ କବି ଶେଷରେ ସେଇ ଶରଣ ପଞ୍ଜର ଶ୍ରୀ ଜଗନ୍ନାଥଙ୍କ ପାଦକଞ୍ଜରେ ଶରଣ ପଶୁଛି । ଏ ଶରଣ ପଶିବା ତା'ର ଆକୁତି ଓ ଅସହାୟତାରେ ଏତେ ଆର୍ଦ୍ର ଯେ, ଏହାକୁ ଆତ୍ମସମର୍ପଣ କୁହାଯାଇ ପାରେ । କବି ସୀତାକାନ୍ତ ମହାପାତ୍ରଙ୍କର 'ପୁରୀମନ୍ଦିର' କବିତାରେ ଏସ୍ୱରଟିକୁ ମଧ୍ୟ ଅତି ନିକଟରେ ଶୁଣାଯାଇ ପାରେ—

ଯୁଗେ ଯୁଗେ ଜାତ ଏଇ ତବ ତବ କଳା ଆଖି
ସ୍ମୃତିସିକ୍ତ ନୀରବତା ସ୍ୱର ।''

ଏ ସ୍ୱରରେ କପଟତା ନାହିଁ, ଧର୍ମକୁ ମିଛ ଅଖିଆର ନାହିଁ । ବରଂ ରହିଛି ଜୀବନକୁ କୋଳେଇ ଧରି ସମଗ୍ର ମାନବ ଜାତି, ସମୟ ଏ ସନାତନ ସତ୍ୟକୁ ଛାଇ ଘୋଡେଇ ରଖିବାର ଆନ୍ତରିକତା । ପୁଣି ଏହି ଚେତନା ପ୍ରକାଶ ପାଇଛି ତାଙ୍କର ବିଦୂଷକ କବିତାରେ—

ମହାପ୍ରଭୁ ନୀଳକନ୍ଦର ବିହାରୀ
ଘେନ ଦୟାବହିଁ ମୋର ଗୁହାରୀ
ତୁମେ ମୋତେ କ୍ଷମା ଦିଅ, ସକଳ ଅଙ୍ଗ ନ ମୋତ

+ + + + + + + + +

କିଥିଲା ଆହେ ମହାବାହୁ ପାଚିରୀ ତୁମର ସତେ
କେତେ ଦମ୍ଭ କେତେ ଯେ ବଧିର, ଶ୍ରଦ୍ଧା ଆଉ କେତେ ଭଞ୍ଜ
ସମୁଦ୍ରର ଏତେବ ପାଟି ଭୁମ୍ଭ ଡ଼ାକ ହାକ ସବୁ ଯେଠି,
ସତେ ଅପହଞ୍ଚ ।''

ସାଂପ୍ରତିକ ସମାଜରେ ବଞ୍ଚିବା କିପରି ଦୁର୍ବିସହ ହୋଇ ଉଠିଛି ଏବଂ ଏଥିରୁ ମୁକ୍ତ ପାଇବା ପାଇଁ କବି ନିମାଇଁ ପଟ୍ଟନାୟକ ଜଗନ୍ନାଥଙ୍କୁ ନିବେଦନ କରୁଛନ୍ତି 'ଅନ୍ଧାରର ନାଭିକୁ' କବିତାରେ—

"ସହରର ମଝିରେ ପ୍ରଭୁ ! ନଦୀମାନେ ଜଳୁଛନ୍ତି ମୋର ଚଉକତି
କେମନ୍ତେ ତରିବି ପ୍ରଭୁ, ଅନ୍ଧାରର ନାଭିଚକ୍ରୁ ?

କେତେ କୋକମିନା ତରଇବି, ଭଣ୍ଡାଇବି ତୁମା ଦେଇ ଯନ୍ତ୍ରଣାମାନଙ୍କୁ
ସ୍ମୃତିଏ ହସିବେ ମୋର, ପାରମାନେ ଉଡ଼ିଗଲେ ଶ୍ରୀମନ୍ଦିରରୁ ଶୂନ୍ୟ ଗଗନକୁ ।''

ଏବଂ କବି ଶ୍ରୀ ପଟ୍ଟନାୟକଙ୍କ ମନରେ ଆଶଙ୍କା ସୃଷ୍ଟି ହୋଇଛି ତେଣୁ ସେ ନିଜକୁ ପ୍ରଶ୍ନ ପଗ୍ଚରୁଛନ୍ତି—

"ଆରେ ଆରେ ବାଇମନ !
ଦେହର ଦେଉଳ ତେଜିକି
ପାଇବୁ ଦେଖି କହ ସେ କୋନୟନ ?''

ସେ ଜଗନ୍ନାଥଙ୍କୁ କେବଳ ଚକାନୟନ କହି ନାରବି ପାଇ ନାହାନ୍ତି । ଚକାନୟନ ଦୁଇଟି ତାଙ୍କ ଆଖିକୁ ତାଙ୍କ ପ୍ରାଣ ମିତଣୀର ସ୍ତନ ଦୁଇଟି ପରି ଦେଖା ଯାଇଛି, ଦେଖୁ ସେ ଲେଖିଛନ୍ତି—

"ତାଙ୍କର ସେ ଚକାଚକା ଡୋଳାମାନ
ଆମ୍ଭ ପ୍ରାଣମିତଣୀଙ୍କ ପୀନସ୍ତନମାନ ପରି ମୋତେ ଲୁହିଁଛନ୍ତି" ।

ଉକ୍ତ ପଂକ୍ତିଟ କବି ମନର ଉଚ୍ଛୃଙ୍ଖଳ ଭାବ ବ୍ୟତୀତ ଅନ୍ୟ କିଛି ନୁହେଁ ।

ସମୟ ରୂପୀ ଜଗନ୍ନାଥଙ୍କୁ ଚିହ୍ନି ନ ପାରି ଯେଉଁମାନେ ତାଙ୍କୁ ଧ୍ୱଂସ କରିଦେବା ପାଇଁ ଆଗେଇ ଯାଇଛନ୍ତି ସେମାନେ ପରୋକ୍ଷରେ କେମିତି ପରସ୍ତ ହୋଇଯାଇଛନ୍ତି ତା'ର ଦୃଷ୍ଟାନ୍ତ ଦେବାକୁ ଯାଇ କବି ଶ୍ରୀ ପ୍ରସନ୍ନ ମିଶ୍ର 'ବଡ଼ ଦେଉଳ' କବିତାରେ ବର୍ଣ୍ଣନା କରିଛନ୍ତି—

" ଯେଉଁମାନେ ଭାବିଥିଲେ—ଭୂଇଁତଳେ ଖାତ ଖୋଳି ସମୟକୁ ପୋତି ଦେବାଲାଗି,
ସେମାନଙ୍କ ହାଡ଼ ଚୂନା ହୋଇ ପରିଣାମେ ବାଲିର ଖାମୁକା ।
ହେ କଳାପାହାଡ଼ ମାନେ ! ଶେଷରେ ପରସ୍ତ ତୁମେ,
ସମୟକୁ କବର ଦେବାର ସମସ୍ତ କପଟ ପାଞ୍ଚ
ନିଷ୍ଫଳ ହୋଇଛି ।"

ଯେଉଁମାନେ ଜଗନ୍ନାଥଙ୍କୁ ସାମାନ୍ୟ କାଷ୍ଠ ପାଷାଣ ଭାବି ବ୍ୟଙ୍ଗ କରୁଥିଲେ, ଧ୍ୱଂସ କରିଦେବା ପାଇଁ ଆପ୍ରାଣ ଉଦ୍ୟମ କରିଥିଲେ, ସେଇମାନଙ୍କ ଉଦ୍ଦେଶ୍ୟରେ କବି ଶ୍ରୀ ମିଶ୍ର 'ହେ କଳାପାହାଡ଼ ମାନେ' ସମ୍ବୋଧନ କରି ଘୋଷଣା କରିଛନ୍ତି ଯେ, ତମେମାନେ ହାରିଯାଇଛ । ପ୍ରକୃତରେ କବିଙ୍କର ଚିନ୍ତାଧାରା ସମୟ ଉପଯୋଗୀ ଓ ବାସ୍ତବବାଦୀ ହୋଇ ପାରିଛି ଏଥିରେ ସନ୍ଦେହ ନାହିଁ ।

ଅନ୍ୟତମ ଆଧୁନିକ କବି ଦେବଦାସ ଛୋଟରାୟ ପୁରୀ ଓ ଜଗନ୍ନାଥଙ୍କ ସଂପର୍କରେ ଏକ ମିଶ୍ର ଅନୁଭୂତି ଭାବ ପ୍ରକାଶ କରି ଲେଖିଛନ୍ତି—

"ପୁରୀ ଓ ସବୁରି ପରେ ତାର ଦୁଇ ମହିୟସୀ ଦେ·ଳା
ଯୋଡକ ଝାଉଁର ଉଗ ସମୁଦ୍ରରେ ପଶଲା ।"

କବି ଉକ୍ତ ପଂକ୍ତିଟିରେ ଉଭୟ ଆଧ୍ୟାତ୍ମିକ ଓ ଯୌନ ଚେତନାର ଏକ ବାସ୍ତବ ପ୍ରତିଫଳିତ ଚିତ୍ର ଫୁଟେଇଛନ୍ତି । ଏକ ପକ୍ଷରେ କବି ସମୁଦ୍ରବେଳାର ବାଲି ଓ ଝାଉଁବଣ ପ୍ରତି ଟାଣି ହୋଇ ଯାଉଥିବା ବେଳେ ଅପର ପକ୍ଷରେ ଶ୍ରୀ ଜଗନ୍ନାଥଙ୍କ ଦର୍ଶନ ପ୍ରତି ଟାଣି ହେଇ ଯାଉଛନ୍ତି । ତାଙ୍କ ଦୃଷ୍ଟିରେ ଶ୍ରୀ ଜଗନ୍ନାଥ କାଠରେ ନିର୍ମିତ ଏକ ମୂର୍ତ୍ତି ବା କଣ୍ଢେଇ ନୁହେଁ । ଏ ଧୂଳି ଧୂସରିତ ମାଟିର ଜଣେ ହିସାବରେ ସେ ଦେଖିଛନ୍ତି । ମୋଟା ମୋଟି ଭାବରେ ବିଶ୍ୱ ପରିପ୍ରେକ୍ଷୀରେ ସେ ଜଗନ୍ନାଥଙ୍କୁ ଆଲୋଚନା କରି ସଫଳକାମୀ ହୋଇ ପରିଛନ୍ତି । ଏହା ତାଙ୍କର ବାସ୍ତବବାଦୀ ଦୃଷ୍ଟିକୋଣର ପରିଚୟ ଦେଇ ପାରିଛି । କିନ୍ତୁ ଫନୀ ମହାନ୍ତିଙ୍କ 'ଉଦ୍ଧବ ଉବାଚ' କୃବିତାରେ ଦେବ ଦାସଙ୍କର ସଂଯତ ଯୌନ ଚେତନା ସାମାନ୍ୟ ଉଚ୍ଛୃଙ୍ଖଳ ଓ ଅସଂଯତ ଭାବେ ପ୍ରକାଶ ପାଇ ଆଧୁନିକ ମଣିଷର ବିକୃତ ମାନସିକତାକୁ ସତ୍ୟଶୀଳ କରି ପ୍ରକାଶ କରୁଛି—

"ଦେଖ ଦେଖ ଚକାଡୋଳା, ଏ ସହର
ଦଶମାସ ଗର୍ଭପରେ ପ୍ରସବ କରିଛି,
ସଂଖ୍ୟା ହୀନ ଯନ୍ତ୍ରଣାର ଛୁଆ କବିଲାଙ୍କୁ ।"

ପୁଣି, 'ଆରେ ଆରେ ଥକାମନ ! ଆରେ ହେଲେ ବୁଲିଯା,
ବେଳକାଳ ହେଲେ, ପୁରୀ ସହରକୁ । ଚୂଡ଼ଙ୍ଗ ସାହିକୁ
ଥରେ ଦେଖିବେ । ଢେଙ୍କିନେ ତୁ କେତକୀ ବନକୁ
ଓ କେମିତିକା ସେ ସହରେ ପାପୀମାନେ ଧାଡ଼ିବାନ୍ଧି
ଚାଲିଛନ୍ତି : ସ୍ୱର୍ଗଦ୍ୱାର ମସାଣି ପଦାକୁ ।"

ଏବଂ ପ୍ରାର୍ଥନା କବିତାରେ—

"ସମୁଦ୍ର କୂଳେ, ପ୍ରଭୁଚକାଡୋଳା ।
ନାଲୁ ସାଲୁ ଚିତାବାଘ, ବନ୍ୟଜନ୍ତୁ ଭୟଙ୍କର ପ୍ରତି ।"

କିନ୍ତୁ ଶେଷରେ ପୁଣି କାଳିଆର ରୂପ ଦେଖି କବିଙ୍କର ମନଲଖି ଯାଉଛି ବାସ୍ତବବାଦୀ ଚିନ୍ତାଧାରା ଠାରୁ ଦୂରେଇ ଯାଉଛନ୍ତି । ଜୀବନରେ କରିଥିବା ପାପତାପ ପାଇଁ ଅନୁତପ୍ତ ହୋଇଛନ୍ତି । ତେଣୁ ସେ ମାନତି ଭର

ସ୍ୱରରେ କହୁଛନ୍ତି ଜଗନ୍ନାଥଙ୍କ ଉଦ୍ଦେଶ୍ୟରେ—

" ପ୍ରଭୁ ହେ ଥରେ ବା ଦେଖନ୍ତି ଯଦି ତମ ବିଶ୍ୱରୂପ
ପାପତାପ ରୋଗ ଶୋକ କଟି ଯାନ୍ତା ମୋହର
କଙ୍କାଳରେ ଆପେ ଆପେ ନେସି ହୋଇ ଯାନ୍ତା
ତମ କଳା ତନୁର ପ୍ରଲେପ ।"

ନିଜକୁ ଚିହ୍ନି ପାରୁ ନ ଥିବା ଓ ସମୟ ପିଠିରେ ସବାର ହେଉଥିବା କବି ଶ୍ରୀ ମୃତ୍ୟୁଞ୍ଜୟ ନାରାୟଣ ବଳ 'ଜଡାଣ' କବିତାରେ ଜଗନ୍ନାଥଙ୍କ ଉଦ୍ଦେଶ୍ୟରେ କହୁଛନ୍ତି—

"ତଥା ପି ଅବୁଝା ହୋଇ ମୁଁ ପୁନଶ୍ଚ ଡାକେ
ତମେ ପ୍ରଭୁ ଦେଖା ଦିଅ,
କହ କଥା ଓ ବୁଝାଇ ମୋତେ
କେଉଁ ପରି ଅଣାକାର ବ୍ରହ୍ମ ନେଇ ତମେ ମୋତେ
କରିଲ ସଂସ୍କାର ?
ସମୟ ପିଠିରେ ପ୍ରଭୁ !
ମୁଁ ପୁନଶ୍ଚ ହୋଇଲି ସବାର ।"

ପ୍ରାଚୀନ ସାହିତ୍ୟମାନଙ୍କରେ ଶ୍ରୀ ଜଗନ୍ନାଥ ଯେଭଳ ପ୍ରତ୍ୟକ୍ଷଭାବରେ ପ୍ରକାଶିତ ହୋଇଛନ୍ତି, ଆଧୁନିକ କବିତାରେ ସେଭଳି ପ୍ରତ୍ୟକ୍ଷ ପରିପ୍ରକାଶ ଲକ୍ଷିତ ହୁଏ ନାହିଁ । ସାଂପ୍ରତିକ ମଣିଷର ଜଟିଳ ଓ ସଂପ୍ରସାରିତ ଅନୁଭୂତିର ବଳୟରେ ଶ୍ରୀଜଗନ୍ନାଥ ବରଂ ଅଧିକ ଜୀବନ୍ତ ଓ ଅଧିକ ମାନବିକ ହୋଇ- ଉଠିଛନ୍ତି । ମନେହୁଏ ଜୀବନ/ଯନ୍ତ୍ରଣା, ଜନ୍ମ/ମୃତ୍ୟୁ, ପ୍ରାପ୍ତି/ବିଡମ୍ବନା ଏ ସବୁକୁ କେନ୍ଦ୍ରକରି ସେ ଯେପରି କ୍ରମଶଃ ଅଧିକରୁ ଅଧିକ ପ୍ରକଟିତ ହୋଇଉଠିଛନ୍ତି । ଏ ସବୁ ସତ୍ତ୍ୱେ ବି ଆଧୁନିକ କବିତାରୁ କ୍ରମଶଃ ଏଇ ଚେତନା ନିର୍ବାସିତ ହୋଇ ଯାଉଥିବା ଦୁର୍ଲକ୍ଷ ନୁହେଁ ।



ଶ୍ରୀ ପ୍ରସନ୍ନ କୁମାର ବରାଳ
ଘର/ଡାକ—ବଡ଼ଞ୍ଜୋ
ଥା—ଫକୀରପୁର
ଜି—କେନ୍ଦୁଝର

ଶ୍ରୀ ପ୍ରଦୀପ୍ ପଟ୍ଟନାୟକ

# ।। ଭଂଗା ରାତିର ସ୍ୱପ୍ନ ।।

ଝରକାର ରେଲିଂ ଫାଙ୍କ ଦେଇ 'ପ୍ରଜ୍ଞା' ଯେତେବେଳେ ବାହାରକୁ ଚାହିଁଲା ସେତେବେଳେ ସେ' ଅନୁଭବ କରୁଥିଲା ନିଜ ସ୍ମୃତିଲିପିରୁ କେତେକ ଘଟଣା ।

ରାତି : ନିର୍ଜନ ଅନ୍ଧାର ରାତିରେ ନେଥା ନେଥା ଅନ୍ଧାର ମାନେ ଖେଳୁଥିଲେ ଡାଳରୁ ଡାଳକୁ ପତ୍ରରୁ ପତ୍ରକୁ ହୋଇ ଯେତେବେଳେ ସେ ଭାବୁଥିଲା ଭଂଗା ପଥରମୂର୍ତ୍ତି କଥା ।

ପଥର ମୂର୍ତ୍ତି !! ବାପ୍‌ରେ ବାପ୍, ସେଇ ପଥର ମୂର୍ତ୍ତି କଥା ଭାବିଲେ ଛାତିରୁ କୋହ ଜାତ ହେଉଛି, ମନ ଶିହରି ଉଠୁଛି । କେବଳ ସେଇ ନୃଶଂସ ଦେଶଦ୍ରୋହୀ ବିଦେଶୀ ମାନଙ୍କ ପାଇଁ ....!

ଏମିତି ଉଆଁସୀକନ୍ୟାର କଅଁଳ ଦେହକୁ ଆଉଁସି ଆଉଁସି ପ୍ରଜ୍ଞା ମନେ-ମନେ କେତେକଥା କହିଯାଏ । ତା କାନପାଖରେ ଶେଷରେ ଉଆଁସୀ କନ୍ୟାର ଆଖିରୁ ଧାର ଧାର ହୋଇ ଲୋତକ ଝରିଯାଏ ସେଇ କଥା ଶୁଣି ଶୁଣି ।

ସେଇ ଲୋତକ ଭିଜା ଆଖିରେ ଉଆଁସୀ ପଚାରେ ପ୍ରଜ୍ଞା ତୁ ଯେଉଁ ପଥର ମୂର୍ତ୍ତି କଥା ଭାବୁଛୁ ତାହାକୁ ତୁ ଏତେ ଗୁରୁତ୍ୱ ଦେଉଛୁ କାହିଁକି ? ତୋ ମନକୁ ଅଗ୍ନିର ବିଭୀଷିକାରେ ଉତ୍ୟକ୍ତ କରୁଛୁ କାହିଁକି ? ? ଛାର ପଥର ମୂର୍ତ୍ତି ସିଏ—ତୁ' ସେ' କଥା ଭାବି ଭାବି ଏ ଅନ୍ଧାର ରାତିରେ ପାଗଳି ପରି ହେଉଛୁ କାହିଁକି ?

ଉଆଁସୀର ଏ କଥା ଶୁଣି ପ୍ରଜ୍ଞାର ଭାବନାର ସୂଅ ହୁଏତ ଅନ୍ୟ ରାସ୍ତାକୁ ଫେରି ଆସିଲା । ଉଆଁସୀ ଆଶ୍ଚର୍ଯ୍ୟରେ ତା ଆଖି ଦ୍ୱୟକୁ ଚାହିଁ ଦେଖୁଛି ହଠାତ୍ ଲୋତକ ଧାର ଧାର ହୋଇ ବୋହି ପଡୁଛି ତା' ଚକ୍ଷୁ ଯୁଗଳରୁ !

ତା' ପରେ ପରେ ତା ଓଠ ଫାଙ୍କ କରି ଉଠିଲା ଏବଂ କହିଲା ଉର୍ଆସୀ ମୁଁ ଜାଣୁଛି ଆବାଲ୍ୟରୁ ମୁଁ ତୋତେ ଦେଖି ଆସୁଛି ତୋ'ର ସେଇ ବିକଳାଙ୍ଗ କଳା ମିଚି ମିଚି ରୂପକୁ । ତୁ' ଭଗବାନଙ୍କ ଆଶୀର୍ବାଦରୁ କି ଅଭିଶାପରୁ ଏଠାରେ ଏମିତି ରହି ଆସୁଚୁ ମୁ ଜାଣେନାଇଁ, କିନ୍ତୁ ମୁଁ ଭାବୁଚି ତୋର ଏହା ବୋଧେ ଅଭିଶାପ । ନଥିଲେ ତୁ ଏମିତି ମୋତେ କହି ନଥାନ୍ତୁ ।

ଏକଥା ଶୁଣି ଉର୍ଆସୀର ଆଖି ଦୁଇଟି ଅପଲକ ଭାବେ ରହି ରହିଥିଲା ପ୍ରଜ୍ଞା ଶୁଣି କହିଲା କାରଣ ବିଦେଶୀ ସରକାର ଅନ୍ଧାର ରାତିରେ ତୋ'ର ଛାତି କରତି ଏଇ ଦେଶର ଶିଳ୍ପୀ ବଂଶକୁ ନିପାତ କରୁଥିଲେ । କାରୁକାର୍ଯ୍ୟ ବିମଣ୍ଡିତ ମୂର୍ତ୍ତି ଓ ମନ୍ଦିର ସବୁ ଧ୍ୱଂସ କରୁଥିଲେ । ସେତେବେଳେ ତୋର କି ମମତା ଥିଲା ଏଇ ଦେଶ ପ୍ରତି ? ଏଇ ଜାତି ପ୍ରତି ? ? ତୁ' ତୋ' ଛାତିକୁ ଦେଖାଇ ଠିଆହୋଇ ପାରିଲୁ ନାଇଁ ସେଇ ସଇତାନଙ୍କ ଆଗରେ ।

ପୁଣି ଉର୍ଆସି ଧୀର ସ୍ୱର କହିଲା କେଉଁ ମୂର୍ତ୍ତି ଓ ମନ୍ଦିର କଥା କାହିଁ ମୁଁ ତ କିଛି ଜାଣିନାଇଁ ।

ପ୍ରଜ୍ଞା କହିଲା—ଯେଉଁ ମୂର୍ତ୍ତିଗୁଡ଼ି ଆଜି ଆମ ଦେଶ ଗୌରବରେ ମୁଣ୍ଡଟେକି ସବୁଠି ବିଜୟ ହାସଲ କରି ଶୋଭା ପାଉଛି । ପୂଜ୍ୟ ବିବେଚିତ ହଉଚି କଳାର ଦେଶ ବୋଲି । ପୁଣି ଅତି ଗମ୍ଭୀର ସ୍ୱରରେ କହିଲା ମନେଅଛି କୋଣାର୍କର ସୂର୍ଯ୍ୟ ମନ୍ଦିର ଦେଖ, ପୁରୀର ଶ୍ରୀକ୍ଷେତ୍ର ଦେଖ, ଭୁବନେଶ୍ୱରର ରାଜା ରାଣୀ ଓ ଲିଂଗରାଜ ମନ୍ଦିର ଦେଖ, ଯେଉଁଠି କଳାର କାରୁ କାର୍ଯ୍ୟ ବିମଣ୍ଡିତ । ଯେଉଁ କାରୁକାର୍ଯ୍ୟ କୁଣ୍ଡରେ ସ୍ୱୟଂ ଭଗବାନଙ୍କ ଆବିର୍ଭାବ, ସେଇ ମନ୍ଦିର ମାନଙ୍କୁ ଧ୍ୱଂସ ମୁଖରେ ପତିତ କରିବାକୁ ଯାଉଥିଲେ ସେଇ ସଇତାନ ନୃଶଂସ ବିଦେଶୀ ମାନେ । ଆଜି ଯେଉଁ କଳା ଆଗରେ ସେମାନେ ନିଜ ନିଜର ମୁଣ୍ଡକୁ ନୁଆଁଇ ନିଷ୍ପେଷି ପ୍ରାଣକୁ ପବିତ୍ର କରୁଛନ୍ତି । ଏବଂ ସେଇ କାରୁକାର୍ଯ୍ୟକୁ ଦେଖି କୃତାର୍ଥ ଲଭୁଛନ୍ତି, ବୁଝିବ ?

ଏପ୍ରକାର କଥାଶୁଣି ତା' ଛାତି ଧପ୍ ଧପ୍ ହେଲା । ପୁଣି ତା' ବିଗତ କଥା ଗୁଡ଼ିକୁ ଝାପ୍‌ସା ଝାପ୍‌ସା ମନେ ପକାଇଲା । ତା' ପରେ ସେ' ଫେରି-ଆସିଲା ଠିକ ରାସ୍ତାକୁ । ତା'ର ମନେ ପଡ଼ିଲା ତା'ଛାତିରେ ବଜୁଥିବା ବୁଟ୍ ଶବ୍ଦ । ଇଂରେଜ ଶାସନର ବର୍ବର ଖେଳ । ନିଷ୍ପେଷିତ ଓଡ଼ିଆ ଭାଇଂକ ପ୍ରଜା ପିଣ୍ଡକୁ ଦଳିତ କରି ଆକ୍ରମଣ । ହିନ୍ଦୁ ମନ୍ଦିର ଧ୍ୱଂସ କଥା । ଏବଂ ଯେଉଁମାନେ ପଥର

ମୂର୍ତ୍ତିକୁ ଜୀବନ୍ତ ରୂପ ଦେଇ ଗଢ଼ି ତୋଳୁଥିଲେ ସେଇ ଗୌରବ ବିମଣ୍ଡିତ ଦେଶର କାରୀଗର ବଂଶକୁ ଲୋପ କରୁଥିଲେ କେତେକ ନିର୍ଲଜ୍ଜ ବା' ପୁରୁଷ ଶାସକ ଗୋଷ୍ଠୀ !!! ଯାହା ଦ୍ୱାରା କି ଦେଶର ଶିଳ୍ପୀବଂଶ ଛଦ୍ମ ବେଶରେ ଲୁଚି ରହିଥିଲେ ନିଘଞ୍ଚ ଅରଣ୍ୟର କୋଳରେ । ପାହାଡ଼ର କୋରଡ଼ ମାନଙ୍କରେ ।

ଏ' ସବୁ କଥା ଭାବି ଭାବି ରଙ୍ଗୀପୀର ଛାତିର ଖଣ୍ଡ ଖଣ୍ଡ ହୋଇ ଅଗ୍ନିଖଣ୍ଡମାନ ଖସିବାକୁ ଲାଗିଲେ ଏବଂ ତା' ଛାତି ତଳ କରତି ହେବାକୁ ଲାଗିଲା ! ବେଳକୁ ବେଳ ବାଷ୍ପରୁଦ୍ଧ ହେବାକୁ ଲାଗିଲା । ହଠାତ ତା' ପାଟିରୁ ବାହାରି ପଡ଼ିଲା 'ହାୟରେ ନିର୍ମମ ସଇତାନ......... !!

ଏ' ସମୟେ ରଙ୍ଗୀପୀ ଦେଖେ ଆଖିରୁ ଲୁହ ପୋଛୁଛି, ପ୍ରିଙ୍କା । ତା' ଲୋତକ ଭିଜା ଆଖି ଆଗରେ ନାଚି ଉଠୁଚି ସେଇ ଶିଳ୍ପୀଟିର କଥା । ଯା'ହାର ତୂଳୀ ଓ ନିହାଣ ମୁନରେ ଥିଲା ଜୀବନୀ ଶକ୍ତି ଏବଂ ମନରେ ଥିଲା ସାତ ସମୁଦ୍ର ଲହରୀର ସ୍ୱପ୍ନ, ଯେଉଁ ସ୍ୱପ୍ନର ତୂଳୀରେ ଆଙ୍କି ପାରୁଥିଲା ଜୀବନ୍ତ ଛବି ! ଯେଉଁ ମୂର୍ତ୍ତି ଓ ମନ୍ଦିରକୁ ଦେଖି ଆଜି ସାରଦେଶ ହସୁଛି....!

: ଆହା...., ସତରେ କି ଶିଳ୍ପୀ ନ ଥିଲା ସେ ! ସେ ଗରିବ ବହୁତ ଗରିବ ହେଲେ ମଧ୍ୟ ତା' ହୃଦି ସମସ୍ତେ ଶ୍ରଦ୍ଧା ମନୋଭାବ ସମ୍ପନ୍ନ ଥିଲେ ତା ନିରୀହ ପ୍ରାଣ ଚିପି ନେଇଚି ଏଇ ବିଦେଶୀଙ୍କ ରଥଚକ । ତା' ରକ୍ତକୁ ଶୋଷି ନେଇଚି ଏଇ ବିଦେଶୀଙ୍କ ଚକ୍ ଚକ୍ କରୁଥିଲେ ତୀକ୍ଷ୍ଣ ତରବାରୀ !!

ହାୟରେ ଭଗବାନ, ସେମାନଙ୍କ ହାତ ଅଟକି ଗଲା ନାହିଁ ? ହାତରୁ ତରବାରୀ ଖସି ଗଲା ନାହିଁ ??

ସେ' ଭଗବାନଙ୍କ ବର ପୁତ୍ର ହୋଇ ଜନ୍ମ ନେଇଥିଲା । ଭଗବାନଙ୍କ ନାମକୁ ଉଚ୍ଚାରଣ କରି ସେ କଳାକୁ ରକ୍ଷା କରିବାକୁ ଯାଇ ତା' ପ୍ରାଣକୁ ଟୁଲାଇ ଦେଇଥିଲା ସେଇ ବୁଲେଟର ଗୁଡ଼ୁମ୍ ଗୁଡ଼ୁମ୍ ଶବ୍ଦରେ !

ଧନ୍ୟ ! ଧନ୍ୟରେ ଶିଳ୍ପୀ ! ଧନ୍ୟ ତୋ'ର ମହିମା ! ଧନ୍ୟ ତୋ'ର ପିତା ମାତା ! ଧନ୍ୟ ତୋ'ର ଗୌରବ ଓ ଗାରିମା....!!

ତା'ର ନାଆଁ ଆଜି ଲିଭିନାହିଁ । ଦେଶର ଇତିହାସ ପଟରେ ସ୍ୱର୍ଣ୍ଣା-କ୍ଷରରେ ଲିପି ବଦ୍ଧ ହୋଇ ରହି ଯାଇଛି । ସେ' ମରିଗଲା ସତ କିନ୍ତୁ ତା'ର

ଆତ୍ମା ମରିନାହିଁ । ସେଇ ବିଦେଶୀ ମାନଙ୍କ ମର୍ମନ୍ତୁଦ ଅକ୍ରମଣରେ ତା'ର ଆହତ ଆତ୍ମାଟି ଅଦୃଶ୍ୟ ମାଟି ପିଣ୍ଡରେ କଇଁ....କଇଁ....ହୋଇ କାନ୍ଦୁଚି । ହେଇ, ଏବେବି କାନ୍ଦୁଚି କହି କଇଁ ହୋଇ କାନ୍ଦି ପକାଇଲା 'ପ୍ରଜ୍ଞା ।

ରାତି ତିନି ଘଡ଼ି ହେବାକୁ ଗଲାଣି । ଉଆଁସୀ କନ୍ୟା ପ୍ରଜ୍ଞାର ଆଖିରୁ ଲୁହ ପୋଛି ଦେଲା ଏବଂ କହିଲା, ଯାଅ ଏଥର ତୋ କଅଁଳ ଦେହରେ ଅଳ୍ପ ବିଶ୍ରାମ ଦେବୁ କହି ଉଆଁସୀ ଚାଲିଯିବା ସମୟରେ ପ୍ରଜ୍ଞା ଆକାଶ ଆଡ଼େ ମୁହଁ ଉଠାଇଲା । ଏବଂ ଦେଖିଲା ଆକାଶରେ ତାରା ମାନେ ମଧ୍ୟ ଲୁହ ଢାଳୁଛନ୍ତି ସେଇ ମନ୍ଦିର ସାମନାରେ ପଡ଼ିଥିବା ନୀରିହ ଶିଳ୍ପୀଟିର ମୃତ ଦେହଟି ଉପରେ । ସେ ଆଶ୍ଚର୍ଯ୍ୟରେ ଅଳ୍ପସମୟ ରହିଁ ରହିଲା ପୁଣି ଆତ୍ମା ତାର କଇଁ କଇଁ ହୋଇ କାନ୍ଦିବାରେ ଲାଗିଲା । ତା କାନ୍ଦଣାର ଲହରୀରେ ଉଆଁସୀ କନ୍ୟାର ଦେହ କଂପିଗଲା । ନଇନାଳ ପାହାଡ଼ ପର୍ବତ ସମସ୍ତଙ୍କ ନିଦ ଭାଙ୍ଗିଗଲା ।

—ମୁଁ ନିଦୁଆ ଆଖିରେ ଚାହିଁଦେଖେ ଲୋତକ ଭିଜା ଆଖିରେ ଏବଂ ଅଳସ ବାଳ ଗୁଡ଼ିକ ମଧ୍ୟ ସେମିତି ଦୁଃଖରେ ବଙ୍କେଇ ହୋଇ ପଡ଼ି ରହିଥିଲେ ତା ପାଣ୍ଡୁରି ଗାଲ ଉପରେ । ସମସ୍ତଙ୍କ ଲୁହରେ ମୋ ଆତ୍ମା ଓଦା ହୋଇ-ଗଲା । ମୁଁ ଭାବ ବିହ୍ୱଳରେ ଚାହିଁ ରହିଥିଲି ସେଇ ପଥର ମୂର୍ତ୍ତିକୁ । ଭଗ୍ନ ଯୌବନସିକ୍ତ ମନ୍ଦିର ଆଡ଼କୁ ।

ମୋ ଛାତିରୁ ହଠାତ କୋହ ସୃଷ୍ଟି ହେଲା । ଆଖିରୁ ଲୁହ ଧାର ଧାର ହୋଇ ବହିଗଲା । ଦୁଃଖର ଲହରୀ ମୋତେ ଭସାଇ ନେଇଗଲା ସେଇ ଅତଳ ସାଗରର ଗହ୍ୱର ମଧ୍ୟକୁ ।

ସେତେବେଳେ ପଥର ମୂର୍ତ୍ତି ମୋତେ ଦେଖି ହସୁଥିଲା । ପ୍ରଜ୍ଞା ଦେଖି କାନ୍ଦୁଥିଲା ।। ଉଆଁସି କନ୍ୟାର ସାରା କୋଠରୀ ବି କାନ୍ଦୁଥିଲା ।।

ମୋତେ ଆଉ ଅଳକୂଳ ନଥିଲା ପାରିହେବା ପାଇଁ ଏଇ ଦୁଃଖର ସମୁଦ୍ରରୁ । ସେଇ ଦୁଃଖର ସମୁଦ୍ରରେ ଭସି ଭସି ଦୁଃଖ ଜଣାଇଲି ସେଇ କାରୁକାର୍ଯ୍ୟରେ ବିମଣ୍ଡିତ ଥିବା ଭଗବାନଙ୍କୁ । ହଠାତ ଦୁଃଖର ଲହରୀ ମୋ ନିକଟକୁ ଭସାଇ ଭସାଇ ନେଇ ଆଣିଲା ସେଇ ନିରୀହ ଶିଳ୍ପୀଟିର ମୃତ ଶରୀରଟିକୁ । ମୁଁ ପ୍ରାଣ ଭୟରେ ଉଦ୍ଧାର ହେବାପାଇଁ ଡେଇଁ ଧରି-ପକାଇଲି ସେଇ ଶବଟିକୁ ।

ସେ ମରି ଯାଇଛନ୍ତି ସତ କିନ୍ତୁ ତା' ଜୀବନ୍ତ ଆତ୍ମା ମୋତେ ଧୀରେ ଧୀରେ କହିଲା, 'ମୁଁ ମରିନାହିଁ ବଂଚିଚି । ତୁ ଭୟ କରନାହିଁ ଏ ଦୁଃଖର ସାଗରରେ ତୁ ବୁଡ଼ିବୁ ନାହିଁ ତୁ ବଞ୍ଚିବୁ ମୁଁ ବଞ୍ଚିବି ଏ' ଦେଶର କଳା ବି ବଞ୍ଚିବ ଆମେ ସମସ୍ତେ ବଞ୍ଚିବା । ଆମକୁ କେହି ବଞ୍ଚାଇବେ ନାହିଁ, କେବଳ ବଞ୍ଚାଇବେ ସେଇ ଭଗବାନ ।

ଦୁଃଖର ସମୁଦ୍ରରୁ ଉଦ୍ଧାର ହେଲି । ଶିଳ୍ପୀଙ୍କୁ ଖୋଜିଲି । ବହୁତ ଖୋଜିଲି କିନ୍ତୁ ପାଇଲି ନାହିଁ । ଭଗବାନଙ୍କୁ କରଯୋଡ଼ି ପ୍ରଣାମ କଲି । କାରୁକାର୍ଯ୍ୟକୁ ଦେଖୁ ଦେଖୁ ପୁଣି ଅବାରିତ ଲୁହ ନିଗିଡ଼ି ପଡ଼ିଲା ମୋ ଚକ୍ଷୁ ଯୁଗଳରୁ....

ମୋ ବିଗତ ସ୍ମୃତିର ସେଇ ଶିଳ୍ପୀଟି ପାଇଁ ଓ ତାହାର ଆତ୍ମାର ସଦ୍‌ଗତି ପାଇଁ ।



ଗାମୁଣ୍ଡି-କରଣସାହି
ଭଞ୍ଜନଗର-୭୬୧୧୨୬

ନୃସିଂହ କୁମାର ରଥ

# ପୁନଶ୍ଚ ଫେରିବାଯାଏ

ଭଲ ପାଇବାର ଭୁଲ ବୁଝାବଣାରୁ ଓହରିଆସ ଅବିନାଶ
କ୍ଷୟ କ୍ଷତିର ବିପର୍ଯ୍ୟୟରୁ
ହିସାବ ନିକାଶର ଛଂଦ ବଂଧ ଅର୍ଗଳିରୁ ।
ବିସ୍ମୟ ବିସ୍ଫାରିତ ଆଖିରେ ଚାହିଁରହିଛ କାହିଁକି ?

ଫେରଇ ଆଣ ଦୂର ଦିଗନ୍ତରେ
ଝାପ୍‌ସା ଦିଶୁଥିବା ମିଥ୍ୟା ପ୍ରତିଶ୍ରୁତିର ପାହାଚରୁ
ଅଶ୍ରୁ-ଆକୁଳ ମୁହଁ ତୁମର
ସଂବେଦନା ବିବର୍ଜିତ ନିର୍ବେଦ
ଅବାଂଛିତ ପୃଥିବୀର ଦ୍ୱାର ଦେଶକୁ ।

ସଂଧ୍ୟା ଆଗତ ପ୍ରାୟ
ନିବିଡ଼ ଆତ୍ମୀୟତାରେ
ନିଜକୁ ହଜାଇଦେଇ ମିଶିଯିବାର
ପ୍ରସାରିତ ଆତୁର ହାତରେ
କୋଳେଇ ନେଇ ଉଠି ଆସିବାର
ଅବାନ୍ତର ମୂହ୍ୟମାନତାରେ
ଭରକ୍ରାନ୍ତ ଅବିଶ୍ୱସ୍ତ ସମୟ
ତୁମର ସରଳତାକୁ କେବେ କ୍ଷମା ଦିଏନି ।
ଡେଣା ଝାପଟାଇ ଆକାଶ ସାରା
ଉଡ଼ି ବୁଲିବାର ଉଦ୍‌ବେଗ
ଫେରି ଆସୁଥାଏ ମଲା ଗଛର କୋରଡ଼ ଭିତରେ
ନିରପଦ ଦୂରତ୍ୱରେ ଢ କି ଢୁକି ହୋଇ
ଚୁପ୍ ଚାପ୍ ଲୋଟି ଯିବାକୁ ।

ଗଛ କଟାଳୀ ମାନଙ୍କ ଉଦ୍ଦାମ ରଣ ସଂଗୀତରେ
ଅନୁରଣିତ ହେଉଥାଏ

ଉଜୁଡ଼ି ଯାଉଥିବା ନିଘଞ୍ଚ ଅରଣ୍ୟରୁ
କ୍ରମଶଃ ପାଖେଇ ଆସୁଥିବା ଅସହ୍ୟ କାରୁଣ୍ୟ ।

ଅନେକ ସଂଭାବନାର ସୁନାଝରୀ ଖରା
ସାପର ଜିଭପରି ଲହ୍ନି ଆସୁଥିବା
ବିବର୍ଣ୍ଣ ଅପରାହ୍ନର ଛାଇରେ
ନିଶ୍ଚିହ୍ନ ହୋଇଯାଉଥାଏ ଗୁହୁଁ ଗୁହୁଁ

ଅବୋଲକରା ଅଝଟ ସ୍ୱପ୍ନ ମାନଙ୍କୁ
ନିଶ୍ଚିନ୍ତରେ ଶୋଇଯିବାକୁ ଦିଅ
ପୁନଶ୍ଚ ଫେରିବା ଯାଏ ଅନାଗତ ଶିଶୁର ହସରେ ।



ରାଜଧାନୀ କଲେଜ
ଭୁବନେଶ୍ୱର

କବିବର ପରିଡା

# ॥ ତ୍ରିଯାମା ॥

ବାତଦ କବାଟ କୋଣେ ସୂର୍ଯ୍ୟ ଯାଏ ଲୁଚି
ଆକାଶରେ ତାରୁ ଖେଳେ ପୁଚି ।
ଏହା ଏକ ଧରୁ ବଂଧା ରୀତି,
ଜୀବନରେ ଆସେ ଅଧେ ଅମା ଅଂଧରାତି ।
ତ୍ରିଯାମାର ପ୍ରଥମ ପ୍ରହର,
ଲଂଘିଯାଏ କୋଳାହଳ କାକଳି ଲହର ॥

ଚଉଦଣ୍ଡା ମାଟିକୁ ଅଦରି ବିଶ୍ରମନ୍ତ ମଣିଷ ଦମୋଜ,
ଅବଚେତନ ମନରେ ଛୁଇଁ ଯାଏ ପରମ ବିଳାସ,
ମଧୁର ନିର୍ଯ୍ୟାସ ।
ତ୍ରିଯାମାର ଦ୍ୱିତୀୟ ପ୍ରହର
ଲଂଘିଯାଏ ପ୍ରଶାଂତି ନଥର ।
ମାଟିର ବିଛଣା ପରେ ମୁହଁ ଯାକି ସ୍ତନଧଂୟ,
ନିଜକୁ ମଣେ ଅପରାଜେୟ ।

ତ୍ରିଯାମାର ତୃତୀୟ ପ୍ରହର
ଲଂଘିଯାଏ ଅଦୃଶ୍ୟ ସହର ।
ଏ ମାଟିର କାନେ କାନେ କହିଯାଏ ଚେତନା ପ୍ରତୁଷ,
ଦେବା ପାଇଁ ମୃଣ୍ମୟରେ ନବଜୀବନ୍ୟାସ ।
ତ୍ରିଯାମାର ଚତୁର୍ଥ ପ୍ରହର
ଲଂଘିପାରେ ନାହିଁ ଆଉ ଫୁଲର ସହର ।



କି/୧୭, ଅଗ. ଉ. କଲେଜ କ୍ୟାମ୍ପସ,
ରାଉରକେଲା-୮

ସ୍ମୃତି ଚାରଣ

କିଶୋର ସ୍ୱାଇଁ (ଉଷସ୍ଥା)

# ମଧ୍ୟରାତ୍ରିର କବି ଓ ନପୁଂସକର କବିତା

ବିଭିନ୍ନ ସାହିତ୍ୟ ପତ୍ରିକାରୁ ଅଖିଳବାବୁଙ୍କ ଗଳ୍ପ ମୁଁ ଆଗରୁ ପଢ଼ିଥାଏ; କିନ୍ତୁ ବ୍ୟକ୍ତିଗତ ଭାବେ ତାଙ୍କ ସହିତ ମୋର ପରିଚୟ ହୋଇ ନଥାଏ । ଆକସ୍ମିକ ଭାବେ ତାଙ୍କ ସହ ମୋର ପରିଚୟ କରାଇ ଦିଅନ୍ତି ନାଟ୍ୟକାର ବିଶ୍ୱଜିତ୍ ଦାସଙ୍କ ପିତୃଦେବ ✓ ସୁବୋଧ ଦାସ । ରାଜଧାନୀର ପ୍ରତିଷ୍ଠିତ ସାହିତ୍ୟ ଓ ସାଂସ୍କୃତିକ ଅନୁଷ୍ଠାନ 'ଶ୍ରେୟାନ ସଂସଦ' ସେତେବେଳେ ନୂଆକରି ଗଢ଼ି ଉଠୁଥାଏ । ଅନୁଷ୍ଠାନ ପକ୍ଷରୁ ଗୋଟିଏ ଦାତବ୍ୟ ହୋମିଓ ପାଥିକ ଚିକିତ୍ସାଳୟ ଖୋଲିବାପାଇଁ ଉଦ୍ୟମ କରାଯାଉଥାଏ । ସେ ବିଷୟରେ କଥାବାର୍ତ୍ତା ହୋଇ ସ୍ଥାନ ନିରୂପଣ ପାଇଁ ସୁବୋଧ ମଉସା ଓ ମୁଁ ଚାଲି ଚାଲି ଅଶୋକ ନଗରସ୍ଥ ମାତୃମଙ୍ଗଳ କେନ୍ଦ୍ର ଆଡ଼େ ଆସୁଥିଲୁ । ରାସ୍ତା ଉପରେ ଆମ ଡାହାଣ କଡ଼କୁ ଗୋଟିଏ ଗାଡ଼ି ଅଟକି ଗଲା ଓ ଗାଡ଼ି ଡୋର୍ ଖୋଲି ଜଣେ ଦୀର୍ଘକାୟ ଶ୍ୟାମଳ ବର୍ଣ୍ଣର ଲୋକ ଯୋଡ଼ ହସ୍ତରେ ହସ ହସ ବଦନରେ ମଉସାଙ୍କୁ ନମସ୍କାର ଜଣାଇଲେ । ସେ ଧଳା ଫୁଲ ପ୍ୟାଣ୍ଟ ପିନ୍ଧିଥାନ୍ତି ଓ ସାର୍ଟକୁ ଇନ୍ କରିଥାନ୍ତି । ତାଙ୍କ ବସିବା ଠାଣି ଓ ଦୁଇ କାନ୍ଧକୁ ସାମାନ୍ୟ ସାମାନ୍ୟ ଉଠାକରି, କହୁଣୀଠାରୁ ଦୁଇହାତକୁ ଯୋଡ଼ି ନମ୍ରତାର ସହ ଯେଭଳି ନମସ୍କାର କଲେ ତାହା ନିଶ୍ଚୟ ସାଧାରଣ ଲୋକଙ୍କ ଠାରୁ ପୃଥକ ଥିଲା । ମୁଁ ପ୍ରଥମେ ଧାରଣା କରିଥିଲି ଯେ, ଏ ଭଦ୍ରବ୍ୟକ୍ତି ବୋଧେ ନାଟୁଆ ଦଳ (ଡ୍ରାମା ଗ୍ରୁପ) ର । 'କୁଆଡ଼େ ଯାଉଛନ୍ତି ବୋଲି' ପଚାରିବାରୁ ମଉସା ଦାତବ୍ୟ ଚିକିତ୍ସା କଥା ଆରମ୍ଭ କରି ଦେଲେ, କିନ୍ତୁ ହଠାତ ଅଟକି ଯାଇ ମୋତେ ଟିକିଏ ଆକଟି କରି କହିଲେ—"ତୁ କ'ଣ ଚିହ୍ନି ନାହୁଁ ?" ଗାଳ୍ପିକ ଅଖିଳ ମୋହନ ପଟ୍ଟନାୟକ ?" ମୁଁ ଠିକ ବୁଝିଗଲି ଓ ଅଖିଳ ବାବୁଙ୍କୁ ନମସ୍କାର କଲି । ମଉସା ମୋ ବିଷୟରେ ଗୁଡ଼ାଏ ପ୍ରଶଂସା ମୂଳକ କଥା କହି ପରିଚୟ କରାଇ ଦେଲେ । ମୋତେ ଖୁବ୍ ଲାଜ ଲାଗିଲା । ଏତେ ବଡ଼

ଗାଲ୍ଭିକ । ସେ ତାଙ୍କ ବାଁ ହାତରେ ମୋ ପିଠି ଥାପୁଡ଼େଇ କହିଲେ—"କବିତା ଲେଖୁଛ ପରା । ଭଲ ଭଲ ଲେଖ ।

ତା ପରେ ବିଭିନ୍ନ ସମୟରେ ଗୋଦାବରୀଶ ସାହିତ୍ୟ ସଂସଦର ବିଭିନ୍ନ ସାପ୍ତାହିକ ଆଲୋଚନା ଚକ୍ରରେ ତାଙ୍କ ସହ ମିଶିବାର ସୁଯୋଗ ମିଳିଥିଲା ।

୧୯୭୩ ମସିହା କଥା । ସନ୍ଧ୍ୟାନାରେ ଶ୍ରେୟାନ ସଂସଦ ପକ୍ଷରୁ "ମଧ୍ୟ ରାତ୍ରିର ପଥପ୍ରାନ୍ତର କବିତା-ପାଠୋତ୍ସବ"ର ଆୟୋଜନ ଚାଲିଥାଏ ଅଖିଳ ବାବୁଙ୍କ ଘରକୁ ମୁଁ ଯାଇଥାଏ ନିମନ୍ତ୍ରଣ ପତ୍ର ନେଇ । ନିମନ୍ତ୍ରଣ ପତ୍ର ଦେଲି ଓ ଏଥର ଗୋଟିଏ କବିତା ପଢ଼ିବାକୁ ତାଙ୍କୁ ଅନୁରୋଧ କଲି । ସେ ଟିକିଏ ହସିଦେଲେ କହିଲେ' "କବିତା ମୁଁ ଲେଖେନି ପ୍ରାୟ ।"

'ଆପଣ ତେବେ ଲେଖିବେ ନିଶ୍ଚୟ ।"—ମୁଁ କହିଲି ।
ସେ ଟିକିଏ ଗମ୍ଭୀର ହୋଇଗଲେ । ସେ ବୋଧେ ଭାବିଲେ ମୁଁ ଯେମିତି ତାଙ୍କୁ କବିତା ଲେଖିବାକୁ ବାଧ୍ୟ କରୁଛି । ମୁଁ ବୁଝିଗଲି । ମୁଁ ଟିକିଏ ହସିଦେଇ କହିଲି—"ଆପଣ ଯଦି କବିତା ଲେଖେନି ବୋଲି କହିଥାନ୍ତେ ତେବେ ମୁଁ ଅନୁରୋଧ କରନ୍ତିନି । କିନ୍ତୁ ଆପଣ କହିଲେ, ମୁଁ କବିତା ଲେଖେନି ପ୍ରାୟ । ସେହି ପ୍ରାୟ ଶବ୍ଦକୁ ଧରି ମୁଁ ଭାବୁଛି ଆପଣ ଚେଷ୍ଟାକଲେ କବିତାଟିଏ ନିଶ୍ଚୟ ଲେଖିବେ । Please—ହାତଯୋଡ଼ି ମୁଁ ଆଗ୍ରହରେ ଅନୁରୋଧ କଲି । ଓକିଲ ଲୋକ ତ, ଠିକ୍ ଯୁକ୍ତିଟା ବାଜିଲା ବୋଧେ । ବୁଝିଗଲେ । ମୁହଁରୁ ଗାମ୍ଭୀର୍ଯ୍ୟ ଦୂରେଇ ଗଲା । ହସି ହସି କହିଲେ—"ଆସ,ଭିତରକୁ ଡାକିନେଲେ । ବସିବାକୁ କହି ଆରମ୍ଭକଲେ—"ହଁ ମୁଁ କବିତା ପଢ଼ିବି । ମଧ୍ୟ ରାତ୍ରିର କବିତା ପଢ଼ିବି । କିନ୍ତୁ ଗୋଟିଏ କଥା । ଏଥର କବିତା ପାଠ ଗୋଟିଏ ମଶାଲ ତଳେ ହେବ ।" ତା'ପରେ ମଶାଲଟି କେତେ ଉଚ୍ଚ ହେବ, କେଉଁଠି ଲାଗିବ' କି ତେଲ ଦେଲେ ଅନେକ ସମୟ ଜଳିବ, କୌଣସି ବିଜୁଳି ଆଲୋକ ପରିବର୍ତ୍ତେ ମଶାଲ ଜଳାଇଲେ ମଧ୍ୟରାତ୍ରିର ପରିବେଶ କିଭଳି ସୃଷ୍ଟି କରା-ଯାଇ ପାରିବ ନାନାଦି କଥା କହିଲେ । ଭିତରୁ ଚାହା ଆସିଲା ଓ ଚାହା ପିଇଦେଇ ମୁଁ ଗଡ ଜିତିବାପରି ଫେରିଲି ।

**ନପୁଂସକର କବିତା :—**

୧୯୭୪ ନବ ବର୍ଷକୁ ସ୍ୱାଗତ ଜଣାଇବା ପାଇଁ ୩୧ ଡିସେମ୍ବର

୧୯୭୩ ରାତି ଠିକ ୧୨ ଘଣ୍ଟା ବେଳକୁ ଅଳକା ସାମନାରେ ମଧ୍ୟ ରାତ୍ରି କବିତା ପାଠୋତ୍ସବର ଆୟୋଜନ କରାଯାଇଛି । ମଶାଲ ରଖା ଯାଇଛି । ୧୯୭୪ ଅଙ୍କକୁ ମହମବତୀରେ ଲେଖା ଯାଇଛି । ଠିକ ରାତି ୧୨ ଘଣ୍ଟା ବେଳକୁ ଅଖିଳ ବାବୁ ଗାଡ଼ିରେ ଆସି ପହଞ୍ଚିଗଲେ । କାର୍ଯ୍ୟକ୍ରମ ଆରମ୍ଭ ହେଲା । ସମସ୍ତେ ୧୯୭୪ କୁ ଦୀପ ଲଗାଇ ପ୍ରଜ୍ଜ୍ୱଳିତ କଲେ । ଅଖିଳବାବୁ ହସି ହସି ନଈଁ ପଡ଼ି ମହମବତୀ ଜଳେଇଲେ । ମଶାଲରେ ଦୀପଦାନ କରାଗଲା । କବିତା ପାଠୋତ୍ସବ ଆରମ୍ଭ ହେଲା । ଅଖିଳବାବୁ ମଶାଲ ତଳକୁ ଚାଲି ଆସିଲେ । ପକେଟରୁ କମଳା ରଂଗର କାଗଜଟିଏ କାଢ଼ିଲେ । ଆବୃତ୍ତି କଲେ । ଖୁବ ବଡ ପାଟିରେ କବିତାର ଶୀର୍ଷକଟିକୁ ଆବୃତ୍ତି କଲେ — "ନପୁଂସକର କବିତା" କବିତାର ଶେଷ ପଂକ୍ତିଥିଲା :

" ରାଜଧାନୀ ଜନପଥ ପରେ
ଯେତେସବୁ ପଦ୍ମଭୂକ୍ ଆଜି ସମବେତ
ଆମେ ସବୁ ବୃହନ୍ନଳା, କ୍ଳୀବ, ନପୁଂସକ
ହାୟ ! ହାୟ !
ବାଣୀପୁତ୍ର ଆଜି ବାକ୍‌ରୁଦ୍ଧ ।"

ସମୟ ପଯୋଗୀ କବିତା ଓ ଅଖିଳ ବାବୁଙ୍କ ଢଙ୍ଗର ଆବୃତ୍ତି ଶୁଣିବାପରେ ସମବେତ ସାହିତ୍ୟିକ ମାନଙ୍କ କରତାଳିରେ ପରିବେଶ ବେଶ ମୁଖରିତ ହୋଇଉଠିଲା । ଖୁବ ଶୀତ ପଡୁଥାଏ । ସେ କବିତା ପଢ଼ି ମଶାଲ ତଳୁ ଓହ୍ଲାଇ ଆସିବା ବେଳକୁ ମୁଁ ଚାହା ଗ୍ଲାସଟିଏ ତାଙ୍କୁ ବଢ଼େଇ ଦେଲି । ସେ ହସି ଦେଇ ଟିକିଏ ନଇଁ ଯାଇ ଚୁପ ଚୁପ କହିଲେ — "ମୁଁ ସାଙ୍ଗେ ସାଙ୍ଗେ କ୍ଲବରୁ ଫେରୁଛି । ପୁଣି ଥରେ ପିବାକୁ ହେବ ।"

ମୋର ହଠାତ ମନେ ପଡ଼ିଗଲା ଓ ମୁଁ ବୁଝିପାରିଲି । ଖାଲି ଲାଜ ଲାଗିଲା । ସେ କବିତାଟିକୁ ଭାଙ୍ଗି ପକେଟରେ ପୁରାଇଥିଲେ । ମୁଁ କବିତାଟି ତାଙ୍କୁ ମାଗିଲି । ସେ କହିଲେ — "ମୋ ପାଖେ ଆଉ କପି ନାହିଁ । ଆଜି ଲେଖିଛି ।" ମୁଁ କହିଲି—" ମୋ ପାଖେ ହଜି ଯିବ ନାହିଁ ।" ବାସ୍, ସେ ମୋତେ ବଢ଼େଇ ଦେଲେ । ମୁଁ ସାଇତି ରଖିଛି ।

ସମୟର ପ୍ରବାହରେ, ଜନ୍ମ-ମୃତ୍ୟୁ ଏକ ସାଧାରଣ କଥା ହେଲେ ବି ଟଙ୍କାନୁଟଙ୍କିକତାର ଜୀବନ ଯାତ୍ରା ପରେ ମୃତ୍ୟୁ ଯେମିତି ହଠାତ୍ ଇତତା

ଖାଇ ଖସି ଯିବାପରି ହୋଇଯାଏ । ଅଖିଳ ବାବୁଙ୍କ ଅକାଳ ବିୟୋଗ ଖବର ଶୁଣି ମୁଁ ଏ ବର୍ଷ ନଭେମ୍ବର ୭ ତାରିଖରେ ଲେଖକ ସାମ୍ମୁଖ୍ୟର ସାହିତ୍ୟ ଆସର ତାଙ୍କରି 'ବାଲିଘରେ' ବସିଥିଲି । ମାସଟା ନ ପୂରୁଣୁ ଡିସେମ୍ବର ୫ ତାରିଖରେ ତାଙ୍କ ପାଇଁ ଲେଖକ ସାମ୍ମୁଖ୍ୟର ଶୋକସଭା ହେଲା । ଆମେ ବାଣୀପୁତ୍ରମାନେ ସଶ୍ରଦ୍ଧ, ସଭକ୍ତି ଶ୍ରଦ୍ଧାଞ୍ଜଳି ଅର୍ପଣ କଲୁ । ରାତି ୧୧ । ୩୦ରେ ଶହୀଦନଗରରୁ ମୁଁ ଏକା ଏକା ଚାଲି ଚାଲି ଘରକୁ ଫେରିଲି । ବାଟସାରା ତାଙ୍କରି କଥା ମନେ ପଡ଼ିଯାଉଥିଲା । ଘରକୁ ଫେରି ଫାଇଲରୁ ସେ ମଧ୍ୟବର୍ତ୍ତି କବିତାଟି କାଢ଼ିଲି । ବଡ ପାଟିରେ ଗୋଟିଏ ଧାଡ଼ି ଯୋଡ଼ି ଆବୃତ୍ତି କଲି—

"ଆମେ ସବୁ ଚାଟୁକାର
ରାଜଧାନୀ ଜନପଥ ପରେ
ଯେତେସବୁ ପଦ୍ମଭୂକ୍
ଆମେ ସବୁ ବୃହନ୍ନଳା, କ୍ଲୀବ,ନପୁଂସକ
ହାୟ ! ହାୟ !
ବାଣୀପୁତ୍ର ଆଜି ବାକ୍ ରୁଦ୍ଧ ।"



କ୍ୱା : ନଂ : ୨୪/୨,
ଟାଇପ୍-୨, ୟୁନିଟ୍ ୩ ଭୁବନେଶ୍ୱର

—ସତ୍ୟବ୍ରତ ବାରିକ

# ଆମ କଣ୍ଠର ସ୍ୱର

ଦାରିଦ୍ର୍ୟ ସହିତ ଆମେ ଖୁବ୍ ପରିଚିତ । ଦାରିଦ୍ର୍ୟ ଆମକୁ ଯେତିକି ଚିହ୍ନିଛି ଆମେ ମଧ୍ୟ ତାକୁ ସେତିକି ଜାଣିଛୁ । ତା' ସହିତ ଆମର ଯେଉଁ ନିବିଡ଼ ସମ୍ପର୍କ ଅନ୍ୟକେହି ବୁଝିବା ବା ଉପଲବ୍ଧି କରିବା ନିଶ୍ଚୟ ଦୂରର କଥା ।

ଦାରିଦ୍ର୍ୟ ଆମର ଚିର ସାଥୀ । ତମେ ସବୁ ନବାଗନ୍ତୁକ । ତମେସବୁ ଏକ ଅନ୍ୟ ପୃଥିବୀରୁ । ଜିଜ୍ଞାସାର ବ୍ୟାକୁଳତା ନେଇ, ଏକ ବୈଚିତ୍ର୍ୟର ଆବିଷ୍କାର ଉଦ୍ଦେଶ୍ୟରେ ଆତ୍ମାନନ୍ଦାନୁଭୂତିର ଉତ୍କଣ୍ଠା ନେଇ, ଆସିଛ ଆମକୁ ଦେଖିବା ପାଇଁ, ଆମ ସଙ୍ଗେ ହସି ହସି କିଛି ସମୟ କଟାଇବା ପାଇଁ । କେତେବେଳେ ବା ଏଇ ପଶିଯାଇଥିବା ଗୃହଣ୍ଟି କିଆ ପେଟ ସମୁଦ୍ରକୁ ଦେଖି କ୍ଷଣିକ ଭାବନାରେ ଭାସି ଯାଉଥିବ, ଛାତି ଚମଡ଼ାକୁ ଆତ୍ମପ୍ରକାଶ କରୁଥିବା କଙ୍କାଳ ମାନଙ୍କ ପ୍ରତି ସମ୍ବେଦନଶୀଳ ହେଉଥିବ, ଆଉ କେତେବେଳେ ନିଷ୍କୁରା ମୁଣ୍ଡର କୁଞ୍ଚିତ କପାଳ ଓ ତା ତଳକୁ ଆଖି କୋରଡ଼ର କାରୁଣ୍ୟରେ ଆମ ଅପନ୍ତରା ଜୀବନର ବିବରଣୀ ପଢ଼ିଯାଉଥିବ ।

କିନ୍ତୁ ହେ ମୋର ବନ୍ଧୁ ଭାଇମାନେ, ନିବିଡ଼ତାର ତାତ୍ତ୍ୱିକ ଭାଷା ଜ୍ଞାନରେ ତୁମେ ବଳିଷ୍ଠ ହେଲେ ମଧ୍ୟ ଆମ ହୃଦୟର ସଜ୍ଞାହୀନ, ଭାଷା ହୀନ ଅଭିବ୍ୟକ୍ତି ତୁମ ପକ୍ଷରେ ବୋଧଗମ୍ୟ ହେବା ସହଜ ନୁହେଁ । ଏତେ ଶୀଘ୍ର ତୁମେ ଆମକୁ ଛୁଇଁ ପାରିବନି । ଏତେ ସହଜରେ ଏଡ଼େ ଭାଗ୍ୟର ଅଧିକାରୀ ଆମେ ହୋଇପାରିବୁ ବା କିପରି ? ତମେ ସବୁ ଯେଉଁ ଆତ୍ମୀୟତାର ବନ୍ଧନରେ ଆସିଛ ତାହା ଏକ ପ୍ରକଳ୍ପ ମାତ୍ର । ସେ ପ୍ରକଳ୍ପରେ ଆତ୍ମୀୟତା ଥିବା ପରି ଜଣାଯାଏ ନାହିଁ । ସେ ପ୍ରକଳ୍ପର ପ୍ରାକକଥନ ଓ ପ୍ରସ୍ତାବନା ଅନାତ୍ମୀୟତାର ଇଙ୍ଗିତ ଦିଏ । ତୁମର ସୁବୋଧ ପ୍ରାକ୍‌କଥନ କହେ—ଆମେ ଏକ ଅମଣିଆ ଜାତି, ଏକ ବଞ୍ଚିତ ଅବହେଳିତ ସମାଜ । ଏକ ନିଛ ପାହାଡ଼ରେ ନିଃସହାୟ ଭାବରେ ବଞ୍ଚି ରହିଥିବା ଦାରିଦ୍ର୍ୟ-ଗ୍ରସ୍ତ ସମ୍ପ୍ରଦାୟ-ସହାନୁଭୂତି ଓ ଦୟାର ପାତ୍ର । ତମେ ଯେଉଁମାନେ ଜିଭ ଅଗରେ ଦାରିଦ୍ର୍ୟର

ବେଶ ସନ୍ଧା କରି ସମ୍ମେଳନ କରୁଛ, କଦାପି ଜାଣିନାହଁ ଦାରିଦ୍ରର ଅସଲ ରୂପ କ'ଣ ତା'ର ଘନିଷ୍ଠତା କେତେ ପ୍ରଚଣ୍ଡ, ତା'ର ଦେ'ଣ ନେ'ଣ କେତେ ଯୋଜନା-ବଦ୍ଧ ଶୃଙ୍ଖଳିତ ଓ ପ୍ରଭାବଶାଳୀ । ଏ ନିର୍ମମ ନିବିଡ଼ତାକୁ କେବେ କେବେ ତମେ ଅଙ୍ଗେ ଲିଭେଇଛ ? ନିଶ୍ଚୟ ନୁହେଁ । 'ଭାବକୁ ନିକଟ-ଅଭାବକୁ ଦୂର' । ଦରିଦ୍ର ସହିତ ଦାରିଦ୍ର୍ୟର ଭାବ ଏ ଦୁହିଁଙ୍କ ବ୍ୟତୀତ ଆଉ କେହି ଜାଣିପାରିବ ନାହିଁ ।

ଅରଓ୍ୱେଲଙ୍କ ପରି ପରୀକ୍ଷା କରିବ ? ସବୁ ପରୀକ୍ଷା ବିଜ୍ଞାନ ଧର୍ମୀ ନୁହେଁ । ସେ କହିଲେ, ସମ୍ପୂର୍ଣ୍ଣ କ୍ଲାବଦ୍ଧ ହିଁ ଉପବାସର ଅନୁଭୂତି । ନିଛକ ସତ । ସକାଳେ ସ୍ନାନ ଶୌଚ ସାରି ଏକ ନୂତନ ଅନୁଭୂତି ଓ ସଫଳତାର ପ୍ରଫୁଲ୍ଲତା ନେଇ ଉପବାସର ଅୟମାରମ୍ଭ ହେବ । ଜଳଖିଆ ବେଳ ଗଡ଼ିଗଲା ବେଳକୁ ଅଠାଳିଆ ଲାଗି ଆସୁଥିବା ପାଟିରୁ ପ୍ରଥମ ତଥ୍ୟ ଗ୍ରହଣ କରିବ । ମଧ୍ୟାହ୍ନର ପ୍ରଲମ୍ବିତ ସମୟକୁ ଶୋଇବା ବା କଥୋପକଥନରେ ବିତାଇବା ହିଁ ଯୁକ୍ତିଯୁକ୍ତ ମନେ ହେବ । ପାକସ୍ଥଳୀର କଳ କଳ ଶବ୍ଦ ଓ କ୍ଷୁଧାର ପ୍ରାବଲ୍ୟ ଯଥେଷ୍ଟ ସୂଚନା ଦେବ । ଅପରାହ୍ନର ଆଳସ୍ୟ ଓ ଭୋକକୁ ଜୟ କରିବାର ସାଫଲ୍ୟ ନିଶ୍ଚୟ ଆନନ୍ଦ ଯୋଗାଇବ । ରାତ୍ରିର ଗଭୀରତା ବଢ଼ିବା ସଙ୍ଗେ ସଙ୍ଗେ ପାକସ୍ଥଳୀର କୋହ ଦେହର ଶିରା, ପ୍ରଶିରା, ମାଂସପେଶୀରେ ଢେଉ ସୃଷ୍ଟି କରୁଥିବ ନିଶ୍ଚୟ । ଦୁର୍ବଳତାର ଚରମ ସ୍ପର୍ଶ ଏତିକି ବେଳେ ହିଁ ଉପଲବ୍‌ଧୀ କରି ହେବ । ତା'ପରେ ରାତ୍ରିର ଶେଷ ଭାଗରେ ସମ୍ପୂର୍ଣ୍ଣ ଶରୀରକୁ ଅବଚେତନ ସ୍ତରକୁ ନିକ୍ଷେପ କରିବ ନିଦ୍ରାଭିଭୂତ ହୋଇ । ପରବର୍ତ୍ତୀ ସକାଳର ଉଜ୍ଜ୍ୱଳତା ବୃଦ୍ଧି ପାଇବା ସଙ୍ଗେ ସଙ୍ଗେ ଏହି ଉପବାସ ଉତ୍ସବର ଉଦ୍‌ଯାପନ କରି ଉପଲବ୍‌ଧ ତଥ୍ୟ ସମୂହର ସଙ୍କଳନ କାର୍ଯ୍ୟ ଆରମ୍ଭ ହେବ ।

କିନ୍ତୁ ତୁମେ ସିଦ୍ଧାନ୍ତର ମୂଲ୍ୟବୋଧ ବାସ୍ତବତା ଠାରୁ କେତେଦୂର ତାହା ଜାଣିବାର ଇଚ୍ଛା ତୁମଠାରେ ନଥାଏ । ଆମ ପାଇଁ ଉପବାସ ଏକ ଉତ୍ସବ ନୁହେଁ । ଆମେ ଉପବାସ କରୁନା । ଆମଠାରେ ଏହାର ନାମକରଣ ଭିନ୍ନ; ତାହା ଅନାହାର । ସେ ଆମର ସହଜାତ ସହଚର କଥା କହିବା, ହସିବା, ଚାଲିବା ପରି ଏହା ଏକ ଅଭ୍ୟାସଗତ ଓ ଅପରିହାର୍ଯ୍ୟ ସଂସ୍କୃତି । ବାପା, ମା', ଭାଇ ଭଉଣୀ ପରି ଯେ ଆମ ସହ ସମ୍ପର୍କିତ । ଏଇ ମାଟି ପାଣି ପବନ ପରି ତାହା ଖୁବ୍ ପରିଚିତ, ଖୁବ୍ ଆପଣାର ।

'ପାକସ୍ଥଳୀର ଶୂନ୍ୟତା, ବିପର୍ଯ୍ୟସ୍ତ ଛପରର ଛିଦ୍ର, ଏବଂ ଛିଣ୍ଡା କନ୍ଥା-

ବ୍ରତ ଅର୍ଦ୍ଧଲଗ୍ନତା ”—ଦାରିଦ୍ର୍ୟର ଏତିକି ମାତ୍ର ସଜ୍ଞା ନିରୂପଣରେ ଆମେ ସଂଜ୍ଞାକାରଙ୍କର ଦୂରଦୃଷ୍ଟି ଓ ପର୍ଯ୍ୟାପ୍ତ ବୁଝାମଣା ସୀମିତ ଓ ଦୁର୍ବଳ ବୋଲି ଅନୁଭବ କରୁ । ଦାରିଦ୍ର୍ୟର ପ୍ରଶସ୍ତ ବାହୁ ଆମ ଜୀବନର ସର୍ବାଙ୍ଗକୁ କିପରି ଦୃଢ଼ ଓ ନିବିଡ଼ ଭାବରେ ଆଲିଙ୍ଗନ କରିଛି ତାହା ଏକ ସଂକ୍ଷିପ୍ତ ଓ ସାମାବଦ୍ଧ ସଂଜ୍ଞାରୁ ପ୍ରକାଶିତ ହୋଇପାରେ ନାହିଁ । ତେଣୁ ଆମେ କହୁ ତମେ ସବୁ ଦାରିଦ୍ର୍ୟକୁ ବୁଝିନାହିଁ କିମ୍ବା ଆମକୁ ଚିହ୍ନିନାହଁ । ଶିଶୁର କାନ୍ଦଣାର ମର୍ମ ବ୍ୟାଖ୍ୟା କରିବାକୁ କେବଳ ମା'ର ହିଁ ସାମର୍ଥ୍ୟ ଅଛି ।

ଆମ ଭିତରୁ ଅନେକ ଆଦିମ ଯୁଗର ଅଭ୍ୟାସକୁ ଛାଡ଼ିପାରି ନାହୁଁ । କେତେକ ସେମିତି ଅଛୁଆଁ ହୋଇ ରହିଛୁ । ଖାଲି ସାନ୍ତ୍ୱନା ଦେବା ପାଇଁ ଆମକୁ ବାପୁଜୀ ହରିଙ୍କ ନାଁରେ ଯୋଡ଼ିଛନ୍ତି । ଆହୁରି, ଆହୁରି ଅନେକ ଜାତିର ଲୋକ ମଧ୍ୟ ଆମର ଦଳ ରେଗୁଛନ୍ତି । ଏପରି ଏକ ନିବୁଜ ପ୍ରକୋଷ୍ଠରେ ଆମର ପୁରୁଷ ପରେ ପୁରୁଷ ବିତିଯାଉଛି । ବେଳେ ବେଳେ 'ଯୁଗ ବଦଳିଲା', 'ଯୁଗ ବଦଳିଲା' ବୋଲି ହୁରି ଶୁଭି ଯାଉଛି । ସମୟର ବହମାନ ମୁହୂର୍ତ୍ତମାନଙ୍କ ଭିତରୁ କେତୋଟିକୁ ଉଜ୍ଜ୍ୱଳ ଆଖିରେ ଏକ ଅଦଳ ବଦଳକୁ ଅନୁଭବ କରିବା ପାଇଁ ଚାହିଁ ରହୁଛୁ, ଅପେକ୍ଷା କରୁଛୁ, ଶେଷରେ ଆଖି ପୋଡ଼ିକୁ ମୁଦି ଦେଉଛୁ । କାରଣ, ସେ ଅଦଳ ବଦଳର କୌଣସି ମୌଳିକ ଛାପ ଆମ ଉପରେ ପଡ଼େ ବୋଲି ଆମେ ଉପଲବ୍ଧି କରୁନା । ସମୟ ଅତିକ୍ରମ କରିବା ସଙ୍ଗେ ସଙ୍ଗେ ନୂଆ ନୂଆ କେତେଟି କଥା ଶୁଣିବାକୁ ପାଉ—ନୂଆ ନୂଆ କେତୋଟି ଜିନିଷର ପ୍ରୟୋଗ ଦେଖୁ । ରାଜତନ୍ତ୍ର ପରେ ଫିରିଙ୍ଗି ତନ୍ତ୍ର ଓ ତା ପରେ ଲୋକତନ୍ତ୍ରର ଉଚ୍ଚାଙ୍ଗ କଣ୍ଠସ୍ୱର ଶୁଣୁ । କିନ୍ତୁ ଏମାନଙ୍କ ମର୍ମ କିଛି ବୁଝୁନା । ଦିନେ ରାଜ—ରପରସିଙ୍କ ହାତରେ ବନ୍ଧୁକ ଦେଖୁଥିଲୁ । ପରେ ପରେ ଖାଁକି ପୋଷାକ ପିନ୍ଧା ଗୋରା ସାହାବଙ୍କ ହାତରେ ଲାଠି ଓ ପିସ୍ତଲ ଏବଂ ଏବେ ଦେଖୁଛୁ ଦେଶିଆ ବାବୁଙ୍କ ମୁହଁ ଟାଣ । ଦରକାର ପଡ଼ିଲେ ପୋଲିସମାନେ ଲାଠି; ରାଇଫଲ, ଟ୍ୟାସ ଧରି ଫିରିଙ୍ଗିଙ୍କ ପରି ମାଡ଼ି ଆସୁଛନ୍ତି ।

ଆମ ଉପରେ ଶାସନର କଡ଼ା ନଜର ଅବ୍ୟାହତ ରହିଛି, ଲାଲ ଆଖି ନନବରତ ରହିଛି । ଆମ ଅନ୍ତରରୁ ଅପେ ଆପେ ଅଙ୍କୁର ହେଉଥିବା ଆବେଗ ବା ଅଭିଳାଷ ଏ ନିବୁଜତା ଭିତରେ ଅଣନିଶ୍ୱାସୀ ହୋଇ ଯାଉଛି—ପରିପ୍ରକାଶର ଭାଷା ନ ପାଇ ଆତ୍ମହତ୍ୟା କରୁଛି । ତମେ ସବୁ ଆମକୁ ଦେଖିବାକୁ ଆସୁଛ । ଆମେ ତମକୁ ଅନେଇ ରହୁଛୁ ଏକ ଆଶ୍ଚର୍ଯ୍ୟ ଓ ଭୟମିଶା ଚାହାଣୀରେ । ଏ ଆଖିରେ ଆମ ଅଜ୍ଞତାର ପୁତୁଳିକା, ଏ ମୁଖ ମଣ୍ଡଳରେ

ଅବୋଧତାର ଜ୍ୟୋତି । ତମେ କହୁଛ—କେତେ ନିଷ୍କପଟ, କେତେ ସରଳ, କେତେ ସଙ୍କୋଚ ଏ ଜାତିଟା ! କିନ୍ତୁ ଏ ସବୁର ମୂଳ ଦେଉଛି କିଏ ? ଆମେ ଠିକିଏ ସ୍ପଷ୍ଟବାଦୀ ହେଲେ କହିବୁ—ଏମିତି ଏକ ପ୍ରଶଂସାପୂର୍ଣ୍ଣ ଭାଷା ତୁମ-ଠାରୁ ଜମା ଆଶା କରି ନ ଥାନ୍ତୁ, ଯଦି ଆମର ଏକମାତ୍ର ପରିଚୟ 'ଦାରିଦ୍ର୍ୟ' ହୋଇ ନ ଥାନ୍ତା । ବର୍ତ୍ତମାନ ଆମଠାରେ ଦାରିଦ୍ର୍ୟର ସଂଜ୍ଞା ତୁମକୁ ଦୁର୍ବୋଧ୍ୟ ହେଉନଥିବ ।

ଚାଲ ଏଥର ପରିବର୍ତ୍ତନ ଆଡ଼କୁ ମୁହାଁଇବା । ପରିବର୍ତ୍ତନର ଚକା ତ କାହାକୁ ଅପେକ୍ଷା କରି ନାହିଁ । ଆମେ କ'ଣ ପରିବର୍ତ୍ତିତ ହେଉ ନାହୁଁ ? ବେଶ୍ ଶହ ଦୁଇଶହ ବର୍ଷ ତଳେ ଚାରିଶହ ପାଞ୍ଚଶହ ମାଇଲ ବାଟ ଚାଲି ଚାଲି ଯାଉଥିଲୁ । ମୁଣ୍ଡରେ ବୁଢ଼ା ଗୁଡ଼ର ଗଣ୍ଠିଲି ବୋହି ନେଉଥିଲୁ । ଏବେ ତ ବେଶ୍ ବସ୍, ମଟର, ରେଳରେ ଯାଉଛୁ । ପୂର୍ବରୁ ଯେଉଁମାନେ ପାଲିଙ୍କି ଆଉ ଘୋଡ଼ା-ସବାରରେ ଯାଉଥିଲେ ସେମାନେ ବର୍ତ୍ତମାନ ଦ୍ରୁତଗାମୀ ବ୍ୟୋମଯାନରେ ଯାଉଛନ୍ତି । ରୁଚିର ପରିବର୍ତ୍ତନ ଘଟିଛି । ଚାଲି ଚଳନ, ବେଶ ଭୂଷା ଓ ଆଶା-ଆକାଂକ୍ଷାର ଘୋର ପରିବର୍ତ୍ତନ ଘଟିଛି । କାହିଁ କୋଉଠି ବରଗଛ ଛାଇରେ ପଥକ୍ଳାନ୍ତ ପଥିକ ପରି ଘଡ଼ିଏ ମାରୁ ନାହିଁ ।

ତେବେ ତମେ ବାବୁମାନେ କେଉଁ ପରିବର୍ତ୍ତନ କଥା କହୁଛ ? ସାମାଜିକ ପରିବର୍ତ୍ତନ ? ଯୁଗୋପଯୋଗୀ ପରିବର୍ତ୍ତନ ? ସାମାଜିକ ସାମ୍ୟ, ସ୍ଥିତି, ସ୍ଥିରତା ଓ ସଂହତି ପାଇଁ ପରିବର୍ତ୍ତନ ; ଏ ଗ୍ରହରେ ପରିବର୍ତ୍ତନର କ୍ରମ ବିକାଶ ଓ କ୍ରମିକ ଇତିହାସ ଆମ ଅପେକ୍ଷା ତୁମମାନଙ୍କୁ ବେଶୀ ଜଣା । କୌଣସି ଏକ ସମାଜର ଦୃଷ୍ଟାନ୍ତ ଦେଖିଛ ଯେଉଁଥିରେ ଧନୀ ଓ ଦରିଦ୍ର-ଏ ଦୁଇଟି ଗୋଷ୍ଠୀଙ୍କ କଥା ବର୍ଣ୍ଣନା କରା ଯାଇନାହିଁ ? ହୁଏତ ଏମିତି ହୋଇ ଥାଇ ପାରେ—ଦରିଦ୍ର ମାନଙ୍କର ନ୍ୟୂନତାକୁ ଇତିହାସ ମଧ୍ୟ ଗ୍ରହଣ କରିବାକୁ କୁଣ୍ଠାବୋଧ କରିଛି । ଧନୀ, ଦରିଦ୍ର ଏ ଶବ୍ଦ ଦ୍ୱୟକୁ ନିଷିଦ୍ଧ କରିବା, ଉଭୟଙ୍କ ମଧ୍ୟରେ ଏକ ମିଳାମିଶା କରାଇବା—ଏସବୁ ଗୋଟିଏ ଗୋଟିଏ ଦୁଷ୍ପ୍ରାପ୍ୟ ଅଭିଳାଷ । ଏପରି ପରିବର୍ତ୍ତନ ପଛରେ ଦୌଡ଼ାଇବା ଏକ ବିଫଳ ପ୍ରୟାସ—ଏକ ଦିବାସ୍ୱପ୍ନ । କିନ୍ତୁ, ତଥାପି ପରିବର୍ତ୍ତନ ତା' ବାଟ ନେଇ ଆଗେଇ ଚାଲିଛି-କେତେ ଜାତି,ସମ୍ପ୍ରଦାୟ ଧର୍ମ ଚକ୍ରି ଗଢ଼ି,କେତେ ଭାଙ୍ଗି ଭାଙ୍ଗି, ପୁଣି କେତେ ନୂଆ ନୂଆ ସୃଷ୍ଟି କରି । ଆମକୁ ଯେ, ଦିନେ ତମେ କେଉଁଏକ ପରିବର୍ତ୍ତନର ସୁଅରେ ଛାଡ଼ି ଦେବ,ଯେଉଁଠାରେ ଆମେ ତୁମ ଆଦର୍ଶର

ପାରିଜାତ ଫୋଟୁଥିବ—ଏହା ଆମେ କଦାପି ବିଶ୍ୱାସ କରୁନା । ତମ ପ୍ରତି ଆମେ ଏତିକି ସହଯୋଗମନା ଓ ସହାନୁଭୂତିଶୀଳ ହୋଇପାରୁ—ତମେ ଯେଉଁ ସଂହତି ଆଉ ସମନ୍ୱୟ ପାଇଁ ବ୍ୟାକୁଳ ସେହି ପ୍ରକ୍ରିୟା ଚିର ସ୍ରୋତା ଓ ନିରବଚ୍ଛିନ୍ନ ହେଉ, ଯେପରି ଆମ ମାନଙ୍କର ସ୍ଥିତି ନର୍କଗାମୀ ନ ହେଉ ।

ପୁଣି ଫେରି ଆସିବା ସେହି ପୁରୁଣା ପ୍ରସଙ୍ଗକୁ । ଦାରିଦ୍ର୍ୟ ଆମର ଚିର ସହଚର । ଦୟାର୍ଦ୍ର ହୃଦୟ ନେଇ ତମେ ଆସିଛ ଆମର ପରିଚୟ ମାଗିବାକୁ ଯେତିକିରେ ପେଟ ନପୁରିବ ସେତିକି ଦେଇ ଆନୁଗତ୍ୟ କିଣିବାକୁ । ଦରିଦ୍ର-ନାରାୟଣ ପୂଜା କରି ଜୀବନକୁ କିଛି ମୂଲ୍ୟ ଦେବାର କାମନାକୁ ପୂର୍ଣ୍ଣ କରିବାକୁ । ଆଉ ଅଛିଛ ଆମପାଇଁ ଏତେବଡ଼ କାମ କରିଛ ବୋଲି କହି ଅନ୍ୟ ଆଗରେ ଫୁଲେଇ ହବାକୁ ।

ଦାରିଦ୍ର୍ୟକୁ ଆମଠାରୁ ଦୂରେଇ ନେବାର ଅମୂଲ୍ୟ ଚିନ୍ତନ ଓ ପରି-ବର୍ତ୍ତନର ପ୍ରକଳ୍ପକୁ ସଫଳ କରିଛ । ତାକୁ ସମସାମୟିକ ତୁଳାରେ ତଉଲି ବଡ ବୋଲାଉଛ । ଆମ ନାଁ ନେଇ ତମ ପରିଚୟ ଜାହିର କରୁଛ । ତୁମ ପ୍ରକଳ୍ପର ମୌଳିକ ଉଦ୍ଦେଶ୍ୟ ତୁମ ପରିଚୟ ପ୍ରତିଷ୍ଠା । ତେଣୁ ଆମେ କହୁ ତୁମ ପ୍ରକଳ୍ପରେ ଆତ୍ମୀୟତା ନାହିଁ-ତୁମ ଆଦର୍ଶବାଦରେ ଆନ୍ତରିକ ବାସ୍ତବତା ବି ନାହିଁ ।



କାଶୀପୁର ୭୬୫୦୧୫
କୋରାପୁଟ

● ସ୍ୱର୍ଗତ ସତ୍ୟନାରାୟଣ ନନ୍ଦ

# ପ୍ରିୟତମା : ୧୯୮୩

ଯେତେବେଳେ ସୃଷ୍ଟି କଲେ ଏଇ ସତ୍ତା
ସେ କି ଦେଖିଥିଲେ ଏଇ ରୂପ
କେବଳ ଟୋପାଏ ସ୍ମୃତି
ଯାହା ଦିନେ ଝଙ୍କିଲା ସୂର୍ଯ୍ୟର
ଅର୍ଦ୍ଧବୃତ୍ତ ଆଖିପତା
ରଙ୍ଗିନ ମେଘରେ
ମେଘ ଅନ୍ତରେ ନୀଳ ଧୂଳିକଣା
ବିହଙ୍ଗ ଡେଣାରେ ଏଣୁ ତେଣୁ ଚେତନା ଓ
ଭିନ୍ନ ଭିନ୍ନ ବିଷମ ରଚନା
ଲୁଚିଗଲା ଦିଗ୍‌ବଳୟ ତଳେ

କେତାଣି କାହିଁକି ସତ୍ତା:
ଛୁଉଁଥିବା ଭିନ୍ନ ସତ୍ତାମାନ
ସ୍ମୃତିରେ ଚେତୁରି ଗଲେ
ମହୁମାଛି ଭ୍ରମର ଇତ୍ୟାଦି
ଗୋଲାପ ମଲ୍ଲି ଓ ପଦ୍ମ

କେଉଁଠେ କେମିତି
ଯ ଓଠର ମାଂସରେ ଫୁଲ ପାଖୁଡ଼ା ନେ
ଓ ଦାନ୍ତ ପନ୍ତିରେ
ଅନ୍ନ କଣିକାଏ ପରି ତା' ଉଦ୍‌ବୃତ୍ତ
ପ୍ରେମ—ଆହା ପ୍ରେମ

କେତେବେଳେ ବିନ୍ଦୁ ପରି ବିଶ୍ୱର ସ୍ଥିତି ଓ
କେତେବେଳେ ସିନ୍ଧୁ ପରି ବିସ୍ତାରିତ
ଆକାଶ ଆକାଶ

କେତେବେଳେ ଲମ୍ବିଯାଏ ବୃତ୍ତରୁ ପରିଧି
ଯାହା ତାଙ୍କେ ପତ୍ରଫୁଲ ଘାସ

କେତେବେଳେ ଖୋଳା ଓଠ
କେତେବେଳେ ସୂର୍ଯ୍ୟର ଗୋଲକ
ମଝିରୁ ବିନ୍ଦୁଏ ସ୍ମିତ
ତେଣା ଦୁଏ ପତ୍ର ପାଖୁଡ଼ିଠର
ଫୁଲ ପାଖୁଡ଼ାରେ ଅବା
ନାନା ରଙ୍ଗ ପକ୍ଷୀଙ୍କ ଡେଣାରେ
କେତେବେଳେ ନିଜ ସତ୍ତା
ପାରି ହୋଇ ଦିଗ୍‌ବଳୟ ସୀମା
ଆଙ୍କି ଦିଏ ନୂଆ ଛବି
ତୁମେ ଯା'ର ଅକ୍ଷାଂଶ ଦ୍ରାଘିମା ।



ସହ ସମ୍ପାଦକ
ସୂଚନା ଓ ଲୋକସମ୍ପର୍କ ବିଭାଗ
ଭୁବନେଶ୍ୱର-୭୫୧୦୦୧,

ସଂପାଦକଙ୍କ କଲମରୁ.............

# ସାହିତ୍ୟ, ରାଷ୍ଟ୍ରର ସାର୍ବଭୌମତ୍ୱ ଓ ବ୍ୟକ୍ତି ସ୍ୱାଧୀନତା

**ସାରଳା ଦାସ**

—"କବିକି କୃପଣ ନ ହୋଇବୁ ରଜା"—

ପ୍ରତ୍ୟେକ ରାଷ୍ଟ୍ରର ଏକ ସାର୍ବଭୌମତ୍ୱ ଓ ସ୍ୱାତନ୍ତ୍ର୍ୟ ରହିଛି । ଏଥିପାଇଁ ଗୋଟିଏ ରାଷ୍ଟ୍ର ଅନ୍ୟ ଏକ ରାଷ୍ଟ୍ରର ଆଭ୍ୟନ୍ତରୀଣ ବ୍ୟାପାରରେ ହସ୍ତକ୍ଷେପ କରି ପାରିବେ ନାହିଁ ବା କରିବା ଉଚିତ ନୁହେଁ ବୋଲି ଏକ ନୈତିକ ଆଦର୍ଶ ଉଣା ଅଧିକେ ଗୃହୀତ ହୋଇଯାଇଛି । ପ୍ରାୟ ସପ୍ତଦଶ ଶତାବ୍ଦୀରୁ ରାଜନୈତିକ "ରାଷ୍ଟ୍ର ଚେତନା"ର ଆଧୁନିକ ଦୃଷ୍ଟିଭଙ୍ଗୀ ଦେଖିବାକୁ ମିଳେ । ଏହି ଦୃଷ୍ଟିଭଙ୍ଗୀ ଅନୁଯାୟୀ ପ୍ରତ୍ୟେକ 'ରାଷ୍ଟ୍ର'ର ଯେ କେବଳ ଏକ ସ୍ୱତନ୍ତ୍ର ରାଜନୈତିକ ସ୍ଥିତି ରହିଛି ତାହା ନୁହେଁ, ପ୍ରତ୍ୟେକ ରାଷ୍ଟ୍ର ନିଜକୁ ସ୍ୱାବଲମ୍ବନଶୀଳ କରିବାର ଦାୟିତ୍ୱ ମଧ୍ୟ ରହିଛି ।

ଏହି ରାଜନୈତିକ ଆଦର୍ଶ ଉଦ୍‌ଘୋଷିତ ହେବା ପୂର୍ବରୁ "ରାଷ୍ଟ୍ରସତ୍ତା"କୁ ଏକ ନୈତିକତାର ମାନଦଣ୍ଡରେ ବିଚାର କରାଯାଉଥିଲା । ରାଷ୍ଟ୍ରର ଭୌଗଳିକ ସୀମାରେଖା ଏହି ନୈତିକ ମୂଲ୍ୟାୟନ ପାଇଁ ବାଧକତା ସୃଷ୍ଟି କରୁ ନଥିଲା । ଫଳରେ ସାହିତ୍ୟିକମାନେ ହିଁ ନୈତିକତାର ପ୍ରଖ୍ୟାପକ ଥିଲେ ।

ଗ୍ରୁଟିଅସ୍ ପ୍ରଥମେ ଆନ୍ତଃ-ରାଷ୍ଟ୍ରୀୟ ନିୟମାବଳୀ ସଂପର୍କରେ ଦୃଢ଼ ମତ ଉପସ୍ଥାପିତ କଲେ । ତାଂକ ବିଚାରରେ 'ରାଷ୍ଟ୍ରର ସାର୍ବଭୌମତ୍ୱ' ଓ ସ୍ୱାତନ୍ତ୍ର୍ୟ ସ୍ୱୀକୃତ ହେଲେ ମଧ୍ୟ, ଏହାରି ଭିତରେ କୌଣସି ରାଷ୍ଟ୍ର ତା'ର ନାଗରିକମାନଙ୍କର ସ୍ୱାଧୀନତା ଉପରେ ହସ୍ତକ୍ଷେପ କରିବାକୁ, ନୀତି ଗର୍ହିତ କାର୍ଯ୍ୟ ରୂପେ ଗ୍ରହଣ କରିବା ଉଚିତ । ଏହି ମତବାଦ ଫଳରେ ଗ୍ରୀସୀୟ ସାହିତ୍ୟରେ ସାହିତ୍ୟିକମାନେ ହିଁ ବ୍ୟକ୍ତି "ସ୍ୱାଧୀନତା"ର ଉଦ୍‌ଗାତା ହେଲେ । ଗ୍ରୁଟିଅସ୍‌ଙ୍କ ମତରେ ଯଦି କୌଣସି ରାଷ୍ଟ୍ରରେ ନାଗରିକମାନେ ଅତ୍ୟାଚାରିତ ହୁଅନ୍ତି, ତେବେ ଅନ୍ୟ ଏକ ରାଷ୍ଟ୍ର ସେହି ରାଷ୍ଟ୍ରର ଆଭ୍ୟନ୍ତରୀଣ ବ୍ୟାପାରରେ ହସ୍ତକ୍ଷେପ କରିବା ଉଚିତ । କାରଣ ରାଷ୍ଟ୍ରଚେତନା କେବଳ

ଏକ ନୈତିକ ଚେତନାର ବିକାଶ । ଦାର୍ଶନିକ ଦୃଷ୍ଟିରୁ ବିଚାର କଲେ କୌଣସି ଏକ ରାଷ୍ଟ୍ର ଅନ୍ୟ ଏକ ରାଷ୍ଟ୍ରର ଆଭ୍ୟନ୍ତରୀଣ ବ୍ୟାପାରରେ ହସ୍ତକ୍ଷେପ କରିବା ଅର୍ଥନୈତିକ,କିନ୍ତୁ କୌଣସି ରାଷ୍ଟ୍ର ଯଦି ତା'ର ଆଭ୍ୟନ୍ତରୀଣ ପରିଚାଳନା କ୍ଷେତ୍ରରେ, ଆନ୍ତଃରାଷ୍ଟ୍ରୀୟ ମାନଦଣ୍ଡକୁ ଯେ କୌଣସି କାରଣରୁ ଉପେକ୍ଷା କରେ, ତେବେ ସେ କ୍ଷେତ୍ରରେ ଏକ "ନୈତିକ-ପୃଥିବୀ"ର ସମର୍ଥକ ରାଷ୍ଟ୍ରର ଲେଖକମାନେ ଅନ୍ୟ ରାଷ୍ଟ୍ରର ଆଭ୍ୟନ୍ତରୀଣ ବ୍ୟାପାର ସଂପର୍କରେ ସାହିତ୍ୟ ସୃଷ୍ଟି କରିବା ଅନୈତିକ ନୁହେଁ । ଏହାକୁ 'ଅନ୍ୟ ରାଷ୍ଟ୍ରର ଆଭ୍ୟନ୍ତରୀଣ ବ୍ୟାପାରରେ ହସ୍ତକ୍ଷେପ" କହିଲେ ସାହିତ୍ୟିକ ତା'ର ନୈତିକ ଆଦର୍ଶରୁ ବିଚ୍ୟୁତ ହୋଇ-ପଡ଼ିବ । କାରଣ ଏଠାରେ "ରାଷ୍ଟ୍ର" ଓ "ନାଗରିକ" ମଧ୍ୟରେ ଥିବା ସଂପର୍କ "ରାଷ୍ଟ୍ରୀୟ ସ୍ୱାତନ୍ତ୍ର୍ୟ ଓ ବ୍ୟକ୍ତି ସ୍ୱାଧୀନତା" ମଧ୍ୟରେ ଥିବା ସଂପର୍କକୁ ସୂକ୍ଷ୍ମ ଦୃଷ୍ଟିରୁ ବିଚାର କଲେ "ନୈତିକତା" ଯେ ଏହାର ମୌଳିକ ଉପାଦାନ ଏ କଥାକୁ ଅସ୍ୱୀକାର କରାଯାଇ ପାରିବ ନାହିଁ ।

ଯେଉଁମାନେ "ଅନ୍ୟ ରାଷ୍ଟ୍ରର ଆଭ୍ୟନ୍ତରୀଣ ବ୍ୟାପାରରେ ହସ୍ତକ୍ଷେପ" ନୀତିରେ ବିଶ୍ୱାସ କରନ୍ତି ଓ ସେହି ବିଶ୍ୱାସ ଅନୁରୂପ କାର୍ଯ୍ୟ କରନ୍ତି,ସେମାନଙ୍କ ଦୃଷ୍ଟିରୁ"ରାଷ୍ଟ୍ରର ସାର୍ବଭୌମତ୍ୱର"ଆଦର୍ଶ ସମ୍ପର୍କରେ ପ୍ରଥମେ ପର୍ଯ୍ୟାଲୋଚନା କରିବାର ଆବଶ୍ୟକତା ରହିଛି । "ଅନ୍ୟ ରାଷ୍ଟ୍ରର ଆଭ୍ୟନ୍ତରୀଣ ବ୍ୟାପାରରେ" "ହସ୍ତକ୍ଷେପ"ର ଅର୍ଥ କଣ ? ଆନ୍ତଃ-ରାଷ୍ଟ୍ରୀୟ କ୍ଷେତ୍ରରେ ଏ ସଂପର୍କରେ ଯେଉଁ ଆଲୋଚନାମାନ ହୋଇ ସାରିଛି ତାହାର ଭାଷା ସେତେ ସ୍ପଷ୍ଟ ନୁହେଁ । କୌଣସି "କାର୍ଯ୍ୟ" ଦ୍ୱାରା କିମ୍ବା "ନୀତି" ଦ୍ୱାରା ଯଦି କୌଣସି "ସାର୍ବଭୌମ ରାଷ୍ଟ୍ର"ର କାର୍ଯ୍ୟ କଳାପକୁ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବରେ ପ୍ରଭାବିତ କରିବାକୁ ଚେଷ୍ଟା କରାଯାଏ, ତେବେ ତାହାକୁ "ଅପର ରାଷ୍ଟ୍ରର ଆଭ୍ୟନ୍ତରୀଣ ବ୍ୟାପାରରେ ହସ୍ତକ୍ଷେପ" ବୋଲି ଗ୍ରହଣ କରାଯାଇଥାଏ । ଯେଉଁଠି ଏହି ପରୋକ୍ଷ ବା ପ୍ରତ୍ୟକ୍ଷ ପ୍ରଭାବ କୌଣସି ରାଷ୍ଟ୍ରର ରାଜନୈତିକ ବ୍ୟାପାରକୁ "ଧମକ ପୂର୍ଣ୍ଣ" ଭାବରେ ନିୟନ୍ତ୍ରିତ କରିବାକୁ ଚେଷ୍ଟାକରେ,ସେଠାରେ ଆଭ୍ୟ-ନ୍ତରୀଣ ବ୍ୟାପାରରେ ହସ୍ତକ୍ଷେପ" କାର୍ଯ୍ୟକାରୀ ହୋଇଥାଏ ।

ଏହି ପରିପ୍ରେକ୍ଷୀରେ ପ୍ରତ୍ୟେକ ସଭ୍ୟ ରାଷ୍ଟ୍ର "ବ୍ୟକ୍ତି ସ୍ୱାଧୀନତା"ର ସ୍ୱରୂପ, ସଂଜ୍ଞା ଓ ତାହାର ସୀମା ସଂପର୍କରେ ନୀତି ନିର୍ଦ୍ଧାରଣ କରିବା ଆବଶ୍ୟକ । ଏହି ନୀତି ନିର୍ଦ୍ଧାରିତ ହୋଇ ପ୍ରକାଶିତ ଓ ପ୍ରସାରିତ ହେଲେ ସାହିତ୍ୟିକମାନେ "ରାଷ୍ଟ୍ରୀୟ ନୀତି" ସଂପର୍କରେ ସଚେତନ ହୋଇ ପାରିବେ । ନିଜର କଳା ବା ସାହିତ୍ୟ ମଧ୍ୟରେ "ବ୍ୟକ୍ତି ସ୍ୱାଧୀନତା" କିଭଳି ପରିସ୍ଫୁଟ ହେଲେ"ରାଷ୍ଟ୍ର-ଶକ୍ତି" ବିପନ୍ନ ହେବା ପରିବର୍ତ୍ତେ ସାହିତ୍ୟିକ ବା କଳାକାରଙ୍କର

ସୃଷ୍ଟି କରିଆରେ "ରାଷ୍ଟ୍ରର ସାର୍ବଭୌମତ୍ୱ" ଓ "ବ୍ୟକ୍ତି ସ୍ୱାଧୀନତା"କୁ ସଫଳ ଭାବରେ ରକ୍ଷା କରାଯାଇ ପାରିବ, ସେ ସଂପର୍କରେ ସଚେତନା ପ୍ରକାଶ ପାଇବା ଉଚିତ ।

ସାହିତ୍ୟ ଓ ରାଷ୍ଟ୍ରର ସଂପର୍କ ଅତ୍ୟନ୍ତ ବ୍ୟାପକ । ବିଶେଷତଃ ଭାରତ ପରି ବହୁ ଭାଷାଭାଷୀ ରାଷ୍ଟ୍ରରେ ଏହି ସଂପର୍କ ଅଧିକ ତାତ୍ପର୍ଯ୍ୟପୂର୍ଣ୍ଣ । ତେଣୁ ଏ ଦିଗରେ ସାହିତ୍ୟିକ, କୂଟନୀତିଜ୍ଞ, ଭାଷା ବିଜ୍ଞାନୀ, ସମାଜବିଜ୍ଞାନୀ ଓ ରାଜନୈତିକ ନେତୃବର୍ଗଙ୍କ ମଧ୍ୟରେ ଗଭୀର ଆଲୋଚନାର ଆବଶ୍ୟକତା ରହିଛି । ଏଭଳି ଆଲୋଚନାର ମାନଦଣ୍ଡ ଉପରେ ହିଁ ନୂତନ ରାଷ୍ଟ୍ର ସମୂହର ନୀତି ନିର୍ଦ୍ଧାରଣ କରିବା ସମ୍ଭବ ହେବ । ଅନ୍ୟାନ୍ୟ ରାଷ୍ଟ୍ରମାନେ ଯେଉଁ ନୀତି ଘୋଷଣା କରି ସାରିଛନ୍ତି, ତାହା ଅନୁଧ୍ୟାନ କରି ନୂତନ ରାଷ୍ଟ୍ରମାନେ "ତୁଳନାତ୍ମକ ବିଚାରରୂ" ନିଜ ନିଜ ରାଷ୍ଟ୍ରରେ କି ପନ୍ଥା ଅବଲମ୍ବନ କରି-ପାରିବେ ତାହା ସ୍ଥିର କରିପାରିବେ । ନଚେତ ଔପନିବେଶିକ ବିଧି ବ୍ୟବସ୍ଥାରୁ ମୁକ୍ତ ରାଷ୍ଟ୍ରମାନେ "ଔପନିବେଶିକ ବିଧି ବ୍ୟବସ୍ଥାକୁ" କାର୍ଯ୍ୟକାରୀ କରି ଚାଲିଲେ "ସାହିତ୍ୟ ଓ ରାଷ୍ଟ୍ର"ର ସଂପର୍କର ଅନ୍ତରାଳରେ ଥିବା ନୈତି-କତାର ଆଦର୍ଶ ବାଧାପ୍ରାପ୍ତ ହେବ । ଫଳରେ ସାହିତ୍ୟିକ ମାନେ ରାଷ୍ଟ୍ରଶକ୍ତି ଦ୍ୱାରା ଅତ୍ୟାଚାରିତ ହେବାର ସମ୍ଭାବନା ଉଣା ହେବ ନାହିଁ ।

ତେଣୁ ଯେଉଁମାନେ 'ନୂତନ ରାଷ୍ଟ୍ର'ର ପରିଚାଳକ, ସେମାନେ ପ୍ରଥମେ 'ରାଷ୍ଟ୍ରର ସାର୍ବଭୌମତ୍ୱ' ଓ 'ବ୍ୟକ୍ତି ସ୍ୱାଧୀନତା'ର ସଂପର୍କ ବିଷୟରେ ନୀତି ନିର୍ଦ୍ଧାରଣ କରନ୍ତୁ । ସେମାନଙ୍କର ବିଚାର ବିମର୍ଷକୁ ସାହିତ୍ୟିକ ମାନେ ମୂଲ୍ୟାୟନ କରନ୍ତୁ । ଏହା ଫଳରେ ସାହିତ୍ୟିକ ଓ ରାଷ୍ଟ୍ରଶକ୍ତିର ପରିଚାଳକ-ମାନେ ନିଜ ଭିତରେ ଦୂରତ୍ୱ ଓ ବ୍ୟବଧାନକୁ ସଂକୁଚିତ କରିପରିବେ ଓ ସାହିତ୍ୟିକ ଓ ରାଷ୍ଟ୍ରନାୟକମାନଙ୍କ ମଧ୍ୟରେ ଦୃଢ଼ ସମ୍ପର୍କ ପ୍ରତିଷ୍ଠିତ ହୋଇପାରିବ । *

ଭୁବନେଶ୍ୱର
୧୩ । ୧୨ । ୮୨

ଭାଗ୍ୟବତୀ ମିଶ୍ର

* (୧୩ । ୧୨ । ୮୨ରେ ଓଡ଼ିଶା ସାହିତ୍ୟ ଏକାଡେମୀର ରଜତ ଜୟନ୍ତୀ ଉତ୍ସବରେ "ସାହିତ୍ୟ ଓ ରାଷ୍ଟ୍ର" ଶୀର୍ଷକ ଆଲୋଚନା ଚକ୍ରରେ ପରିବେଷିତ ଶ୍ରୀ ମନମୋହନ ମିଶ୍ର, ଡକ୍ଟର କୃଷ୍ଣ ପ୍ରସାଦ ମିଶ୍ର ଓ ଶ୍ରୀ ଖଗଚରଣ ଦାସଙ୍କ ନିବନ୍ଧ ଉପରେ ପ୍ରଦତ୍ତ ମନ୍ତବ୍ୟର ଲିଖିତ ରୂପ)

# ଓଡ଼ିଶା ସାହିତ୍ୟ ଏକାଡେମୀ

ଭୁବନେଶ୍ୱର—୭୫୧ ୦୧୪

## ସଦ୍ୟ ପ୍ରକାଶିତ ପୁସ୍ତକାବଳୀ :

| | | | |
|---|---|---|---|
| 1. | Lord Jagannath By : Surendra Mohanty | | Rs. 50.00 |
| ୨. | ଶ୍ରେଷ୍ଠ ଓଡ଼ିଆ ପ୍ରବନ୍ଧ ସଙ୍କଳନ | ପ୍ରଥମ ଭାଗ— | ଟ୩୫.00 |
| | | ଦ୍ୱିତୀୟ ଭାଗ— | ଟ୨0.00 |
| ୩. | ଓଡ଼ିଆ ସନ୍ଥ (ଭକ୍ତି) ସାହିତ୍ୟ | | ଟ୫0.00 |
| ୪. | ଓଡ଼ିଆ ରାସଲୀଳା ସଙ୍କଳନ | ପ୍ରଥମ ଭାଗ— | ଟ୩୫.00 |
| | | ଦ୍ୱିତୀୟ ଭାଗ – | ଟ୩0.00 |
| ୫. | ଆଧୁନିକ ଓଡ଼ିଆ କଥା ସାହିତ୍ୟ | | ଟ୧୪ 00 |
| ୬. | ପ୍ରାଚୀନ ଓଡ଼ିଆ ଗଦ୍ୟ ସଙ୍କଳନ | | ଟ ୯.00 |
| ୭. | ଶ୍ରୀଜଗନ୍ନାଥ | | ଟ ୫.00 |
| ୮. | ଓଡ଼ିଆ ସଂସ୍କୃତ ଚର୍ଚ୍ଚାର ପରମ୍ପରା | | ଟ୧୩.00 |
| ୯. | ଓଡ଼ିଆ ଚୌପଦୀ ସାହିତ୍ୟ | | ଟ ୬.00 |
| ୧୦. | ଓଡ଼ିଆ ଭାଷାର ଉପଭାଷା | | ଟ୧0.00 |
| ୧୧. | ଓଡ଼ିଆ ସାହିତ୍ୟରେ ତନ୍ତ୍ରର ପ୍ରଭାବ | | ଟ୧୪.00 |
| ୧୨. | ଓଡ଼ିଆ ଲିପି ଓ ଭାଷା | | ଟ୧୪.00 |
| ୧୩. | ବ୍ରତ ସାହିତ୍ୟ | | ଟ୨୫.00 |
| ୧୪. | କବି ବ୍ରଜନାଥ ବଡ଼ଜେନା | | ଟ ୬.00 |
| ୧୫. | ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା | | ଟ୧0.00 |
| ୧୬. | ସାହିତ୍ୟ ସଂସ୍କୃତି | | ଟ ୬.00 |
| ୧୭. | ବର୍ଣ୍ଣା ପର୍ବତର ଅଧିବାସୀ | | ଟ ୫.00 |
| ୧୮. | ନାଟ୍ୟକାର ରମାଶଙ୍କର | | ଟ ୯.00 |
| ୧୯. | ଆଧୁନିକ ଓଡ଼ିଆ ନାଟ୍ୟ ସାହିତ୍ୟ | | ଟ୧୨.00 |
| ୨୦. | ଦୁର୍ଗ | | ଟ୩୫.00 |
| ୨୧. | ଓଡ଼ିଆ ଶିଶୁ ସାହିତ୍ୟ ସଂକଳନ | | ଟ୩0.00 |
| ୨୨. | ପ୍ରାଚୀନ ଉତ୍କଳ | ପ୍ରଥମ ଭାଗ— | ଟ୨୫.00 |
| | | ଦ୍ୱିତୀୟ ଭାଗ— | ଟ୨0.00 |
| ୨୩. | ଓଡ଼ିଆ ସାହିତ୍ୟରେ ହାସ୍ୟରସ | | ଟ୧୨.00 |

# ଘୋଷଣା

## ଫର୍ମ ନମ୍ବର ୪ (୮ ନମ୍ବର ଧାରା ଅନୁଯାୟୀ)

| | | |
|---|---|---|
| ୧ । | ପ୍ରକାଶନ ସ୍ଥାନ : | ୧୩୬, ବାପୁଜୀ ନଗର, ଭୁବନେଶ୍ୱର-୯ |
| ୨ । | ପ୍ରକାଶନ ବିବରଣୀ : | ତ୍ରୈମାସିକ |
| ୩ । | ମୁଦ୍ରାକରଙ୍କ ନାମ : | ପ୍ରଦ୍ୟୁମ୍ନ ବଳ |
| | ଜାତୀୟତା : | ଭାରତୀୟ |
| | ଠିକଣା : | ୧୩୬, ବାପୁଜୀ ନଗର, ଭୁବନେଶ୍ୱର-୯ |
| ୪ । | ପ୍ରକାଶକଙ୍କ ନାମ : | ପ୍ରଦ୍ୟୁମ୍ନ ବଳ, ପ୍ରଗତିବାଦୀ ପବ୍ଲିକେଶନସ୍ |
| | ଜାତୀୟତା : | ଭାରତୀୟ |
| | ଠିକଣା : | ୧୩୬, ବାପୁଜୀ ନଗର, ଭୁବନେଶ୍ୱର-୯ |
| ୫ । | ସଂପାଦକଙ୍କ ନାମ : | ଡଃ ଭବଗ୍ରାହୀ ମିଶ୍ର |
| | ଜାତୀୟତା : | ଭାରତୀୟ |
| | ଠିକଣା : | ସି-୨, ଖାରବେଳ ନଗର, ଭୁବନେଶ୍ୱର-୧ |
| ୬ । | ପ୍ରକାଶନର ମାଲିକ ତଥା ଅଂଶୀଦାରଙ୍କ ଠିକଣା : | ପ୍ରଗତିବାଦୀ ପବ୍ଲିକେଶନସ୍ ୧୩୬, ବାପୁଜୀ ନଗର, ଭୁବନେଶ୍ୱର-୯ |

ଆମ୍ଭେ ଶ୍ରୀ ପ୍ରଦ୍ୟୁମ୍ନ ବଳ ଉପରଲିଖିତ ଘୋଷଣା କରୁଅଛୁ ଯେ ଏହା ଆମ୍ଭର ଜ୍ଞାନ ବିଶ୍ୱାସମତେ ଠିକ୍ ଅଟେ ।

ସ୍ୱାକ୍ଷର : ପ୍ରଦ୍ୟୁମ୍ନ ବଳ
ପ୍ରକାଶକ, 'ଚୟନିକା'